# କବିତା ସଂଗ୍ରହ

( Oriya Poetry Selections )

କଟକ ପବ୍ଲିଶିଂ ହାଉସ୍

ଏ କ୍ଷୁଦ୍ର ପୁସ୍ତିକା
ଉତ୍କଳ ବିଶ୍ୱବିଦ୍ୟାଳୟଙ୍କ ନାମରେ
ଉତ୍ସୃଷ୍ଟ ହେଲା

# ନିବେଦନ

ଉତ୍କଳ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷମାନେ ଏହି କବିତା-ସଂଗ୍ରହକୁ ମାଟ୍ରିକ୍ୟୁଲେସନ ପରୀକ୍ଷାର [illegible] ନିର୍ବାଚନ କରିଥିବାରୁ ଅମ୍ଭେମାନେ ସେମାନଙ୍କଠାରେ [illegible] ଜ୍ଞାପନ କରୁଅଛୁଁ ।

ପୁସ୍ତିକା-ସମ୍ବଳିତ ବିଷୟଗୁଡ଼ିକ [illegible] ପ୍ରାଚୀନ ଯୁଗର କବିତା ଓ ଆଧୁନିକ ଯୁଗର କବିତା—ଏହି ଦୁଇଭାଗରେ ବିଭାଗ କରାଯାଇଅଛି । ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଯେଉଁ ଅମୂଲ୍ୟ ରତ୍ନମାନ ରହିଅଛି, ତହିଁରୁ ସାମାନ୍ୟ କେତୋଟି ବାଛି ମାଟ୍ରିକ୍ୟୁଲେସନ ପରୀକ୍ଷାର୍ଥୀମାନଙ୍କପାଇଁ ଏହି "କବିତା-ସଂଗ୍ରହ" ପ୍ରକାଶ କଲୁଁ । ଏହି ରତ୍ନମାନଙ୍କର ଉଜ୍ଜ୍ୱଳ ରଶ୍ମି ଲାଭ କରି ଛାତ୍ରମାନେ ଉଚ୍ଚ ଶିକ୍ଷାକ୍ଷେତ୍ରରେ ଓଡ଼ିଆ ସାହିତ୍ୟର ଅସରନ୍ତି ଭଣ୍ଡାର ପ୍ରତି ଆକୃଷ୍ଟ ହେବେ ବୋଲି ଅମ୍ଭମାନଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ।

ଯେଉଁ କବିମାନେ ଓ ସ୍ୱର୍ଗତ କବିମାନଙ୍କର ବଂଶଧରମାନେ ଏହି ପୁସ୍ତକରେ ସେମାନଙ୍କର କବିତା ପ୍ରକାଶ କରିବାଲାଗି ଅମ୍ଭମାନଙ୍କୁ ଅନୁମତି ଦେଇଅଛନ୍ତି, ସେମାନଙ୍କ ନିକଟରେ ଅମ୍ଭେମାନେ ଚିରକୃତଜ୍ଞ । ମାତ୍ର ଭକ୍ତକବି ୰ ମଧୁସୂଦନ ରାଓ ଓ ସ୍ୱର୍ଗତା କୁନ୍ତଳାକୁମାରୀ ସାବତଙ୍କ ରଚନାର କିୟଦଂଶ ଏ ପୁସ୍ତକରେ ସମ୍ବଳିତ କରିବାପାଇଁ ସେମାନଙ୍କ ବଂଶଧରମାନେ ଅନୁମତି ନ ଦେବାରୁ ଅମ୍ଭେମାନେ ତାହା ପ୍ରକାଶ କରି ନ ପାରି ବିଶେଷ ଦୁଃଖିତ ।

ପୁସ୍ତକଟି ଛାତ୍ରମାନଙ୍କର ଉପକାର ସାଧନ କରି ପାରିଲେ ଅମ୍ଭେମାନେ ଶ୍ରମ ସାର୍ଥକ ମନେ [illegible] ଇତି ।

ତା ୧୧।୭।୧୯୪୫ — ପ୍ରକାଶକ

# ସୂଚୀପତ୍ର

## — ପ୍ରାଚୀନ ଯୁଗ —


| ବିଷୟ | ଲେଖକ | ପୃଷ୍ଠାଙ୍କ |
|---|---|---|
| ୧ । କେଶବ କୋଇଲି | ୰ ମାର୍କଣ୍ଡ ଦାସ | ୩ |
| ୨ । କାନ୍ତ କୋଇଲି | ୰ ବଳରାମ ଦାସ | ୬ |
| ୩ । ପାର୍ବତୀ ବିବାହ | ୰ ବତ୍ସା ଦାସ | ୯ |
| ୪ । ଏକଲବ୍ୟ ବା ଜାର୍ଷ୍ଣଶବରର ଅସ୍ତ୍ରଶିକ୍ଷା | ୰ ଶୁଦ୍ରମୁନି ସାରଳାଦାସ | ୧୬ |
| ୫ । କର୍ଣ୍ଣାର୍ଜୁନଙ୍କ ଯୁଦ୍ଧ ଓ ଅର୍ଜୁନଙ୍କର ବ୍ରହ୍ମାଣ୍ଡ ଦର୍ଶନ | " | ୨୦ |
| ୬ । ଶିବଧନୁର୍ଭଙ୍ଗ | ୰ ବଳରାମ ଦାସ | ୩୦ |
| ୭ । ଲଙ୍କାପୋଡ଼ି | " | ୪୦ |
| ୮ । ଅର୍ଜୁନଙ୍କର ଲକ୍ଷ୍ୟଭେଦ | ୰ ଜଗନ୍ନାଥ ଦାସ | ୪୩ |
| ୯ । କଂସବଧ | " | ୫୨ |
| ୧୦ । କଂସସଭା | ୰ ଅଚ୍ୟୁତାନନ୍ଦ ଦାସ | ୬୨ |
| ୧୧ । ପ୍ରହ୍ଲାଦଚରିତ | ରାଜା ୰ ଗୋବିନ୍ଦଚନ୍ଦ୍ର ଭଞ୍ଜ ଦେଓ | ୬୮ |
| ୧୨ । ବୃନ୍ଦାବନଦୃଶ୍ୟ | " | ୭୧ |
| ୧୩ । ପାରଧି | ୰ ପଦ୍ମନାଭ ନରେନ୍ଦ୍ର | ୭୩ |
| ୧୪ । ଗୋପୀଭାଷା | ୰ ଦନାଇ ଦାସ | ୭୬ |
| ୧୫ । ବୁଢ଼ା ନାଉରି | ୰ ଧନକୃଷ୍ଣ ଦାସ | ୮୦ |
| ୧୬ । ଶ୍ରୀକୃଷ୍ଣଜନ୍ମ | " | ୮୩ |
| ୧୭ । ଶରତ୍ ବର୍ଣ୍ଣନା | " | ୮୮ |
| ୧୮ । ଦ୍ରୌପଦୀବସ୍ତ୍ରହରଣ | ୰ ଭୀମା ଧୀବର | ୯୧ |
| ୧୯ । ସିଂହଳ ବର୍ଣ୍ଣନା | ୰ ଉପେନ୍ଦ୍ର ଭଞ୍ଜ | ୯୫ |

| ବିଷୟ | ଲେଖକ | ପୃଷ୍ଠାଙ୍କ |
|---|---|---|
| ୨୦ । ଜଟାୟୁ ଉଦ୍ଧ | ୰ ଉପେନ୍ଦ୍ର ଭଞ୍ଜ | ୯୮ |
| ୨୧ । ସୁଗ୍ରୀବଙ୍କ ସଙ୍ଗେ ମିତ୍ରତା | " | ୯୯ |
| ୨୨ । କଳାକଳେବର ଚଉତିଶା | ୰ ଭକ୍ତଚରଣ ଦାସ | ୧୦୧ |
| ୨୩ । କଂସର ଚଠାଳି | " | ୧୦୩ |
| ୨୪ । ଗୋପୀଙ୍କ ଖେଦ | " | ୧୦୬ |
| ୨୫ । ଯଶୋଦାବିଳାପ | " | ୧୦୯ |
| ୨୬ । ମଲ୍ଲଯୁଦ୍ଧ | " | ୧୧୨ |
| ୨୭ । ସ୍ୱୟମ୍ବର ସଭା | ୰ ଅଭିମନ୍ୟୁ ସାମନ୍ତସିଂହାର | ୧୧୪ |
| ୨୮ । ଯଶୋଦାବିଳାପ | " | ୧୧୭ |
| ୨୯ । ମାୟାମୃଗବଧ | ୰ ବିଶ୍ୱନାଥ ଖୁଣ୍ଟିଆ | ୧୨୧ |
| ୩୦ । ସୀତା ହନୁମାନ ସମ୍ବାଦ | " | ୧୨୨ |
| ୩୧ । ସୀତାବିଳାପ | " | ୧୨୪ |
| ୩୨ । ଜଗତେ କେବଳ | କବିସୂର୍ଯ୍ୟ ୰ ବଳଦେବ ରଥ | ୧୨୬ |
| ୩୩ । ଲଙ୍କା କ ହୋଇବ ସୁନା | " | ୧୨୯ |
| ୩୪ । ରହସ୍ୟମଞ୍ଜରୀ—୧୦ମ ଛାନ୍ଦ | ୰ ଦେବଦୁର୍ଲ୍ଲଭ ଦାସ | ୧୩୦ |
| ୩୫ । ଶିବରଜା କଥା | ରାଜା ୰ କୃଷ୍ଣ ସିଂହ | ୧୩୨ |

# — ଆଧୁନିକ ଯୁଗ —


| ବିଷୟ | ଲେଖକ | ପୃଷ୍ଠାଙ୍କ |
| --- | --- | --- |
| ୩୬ । ଦରବାର | ୰ ରାଧାନାଥ ରାୟ | ୧୩୯ |
| ୩୭ । ଦେବୀଦ୍ୱାରରେ ସୂର୍ଯ୍ୟାସ୍ତ | " | ୧୪୨ |
| ୩୮ । କବିତାବନ୍ଦଗୀ | ୰ ଫକୀରମୋହନ ସେନାପତି | ୧୪୪ |
| ୩୯ । ଉତ୍କଳଭାରତୀଙ୍କ ଉକ୍ତି | ୰ ଗଙ୍ଗାଧର ମେହେର | ୧୪୬ |
| ୪୦ । ଅଶ୍ରୁମେ ପ୍ରଭାତ | " | ୧୫୦ |
| ୪୧ । ପରିଶ୍ରମ | " | ୧୫୪ |
| ୪୨ । ଗ୍ରାମ ଖେଳା | ୰ ନନ୍ଦକିଶୋର ବଳ | ୧୫୬ |
| ୪୩ । ବର୍ଷାମଙ୍ଗଳ | " | ୧୫୯ |
| ୪୪ । ରେଳଉପରେ ଚିଲିକାଦର୍ଶନ | ୰ ଗୋପବନ୍ଧୁ ଦାଶ | ୧୬୪ |
| ୪୫ । ଉପେନ୍ଦ୍ର ଭଞ୍ଜ | " | ୧୬୯ |
| ୪୬ । ବାଣୀ ଆବାହନ | ୰ ଚିନ୍ତାମଣି ମହାନ୍ତି | ୧୭୧ |
| ୪୭ । ବିରହବ୍ୟଥା | ଶ୍ରୀମତୀ ଅପର୍ଣ୍ଣା ଦେବୀ | ୧୭୩ |
| ୪୮ । ଡାକମନ୍ଦିଲ ଲବଂ | ଶ୍ରୀ ନାରାୟଣମୋହନ ଦେ, ଏମ୍. ଏ. | ୧୭୪ |
| ୪୯ । ସ୍ୱର | ପଣ୍ଡିତ ଶ୍ରୀ ଗୋଦାବରୀଶ ମିଶ୍ର, ଏମ୍. ଏ., ବି. ଟି. | ୧୮୬ |
| ୫୦ । ପ୍ରତ୍ୟାଖ୍ୟାନ | " | ୧୮୮ |
| ୫୧ । ଗ୍ରାମ୍ୟ ଶ୍ମଶାନ | ଶ୍ରୀ ଜଗନ୍ନାଥ ତ୍ରିପାଠୀ, ବି. ଏ., ବି. ଟି. | ୧୯୧ |
| ୫୨ । ବନ୍ଦେ ଉତ୍କଳଜନନୀ | ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର, ବି. ଏ. | ୧୯୫ |
| ୫୩ । ଧଉଳି ପାହାଡ଼ | ଶ୍ରୀ ପଦ୍ମଚରଣ ପଟ୍ଟନାୟକ, ବି.ଏଲ୍. | ୧୯୭ |
| ୫୪ । ତ୍ରିବେଣୀତଟେ | " | ୨୦୫ |
| ୫୫ । ଗ୍ରୀଷ୍ମଋତୁ | ଶ୍ରୀ ଗୋଲୋକଚନ୍ଦ୍ର ପ୍ରଧାନ | ୨୦୯ |
| ୫୬ । ଯାତ୍ରୀ | ଶ୍ରୀ ହରିବନ୍ଧୁ ଶତପଥୀ | ୨୧୦ |

| ବିଷୟ | ଲେଖକ | ପୃଷ୍ଠାଙ୍କ |
|---|---|---|
| ୫୭ । ଅବାହନ | ଶ୍ରୀ ଉପେନ୍ଦ୍ରପ୍ରସାଦ ମହାନ୍ତି, ବି. ଏ., ଡି. ଇଡି. | ୧୯୮ |
| ୫୮ । ଯକ୍ଷର ମେଘ ସମ୍ବୋଧନ | ,, | ୧୯୫ |
| ୫୯ । ମହାନଦୀରେ ଜ୍ୟୋତ୍ସ୍ନାବିହାର | ଡକ୍ଟର ମାୟାଧର ମାନସିଂହ, ଏମ୍. ଏ. | ୧୯୭ |
| ୬୦ । ଟିଗୋପବନ୍ଧୁ | ,, | ୧୧୫ |
| ୬୧ । ଗାନ୍ଧୀଜୀର ଅଶୀର୍ବାଦ | ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ, ବି. ଏ. | ୧୨୬ |
| ୬୨ । ବନ୍ୟା ବିପ୍ଳବ | ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ ଏମ୍. ଏ., ଡି. ଇଡି. | ୧୩୦ |
| ୬୩ । ମୋ ଜନମଭୂଇଁ | ଶ୍ରୀ ରାଧାନାଥ ରଥ | ୧୩୪ |
| ୬୪ । ଜୀବନ ନଈ | ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ବି. ଏ. | ୧୩୭ |
| ୬୫ । ମୃତ୍ୟୁଶଯ୍ୟାରେ ମନସ୍ୱୀ ମଧୁସୂଦନ | ଶ୍ରୀ ନବକିଶୋର ଦାସ, ବି. ଏ., ବି. ଏଲ୍. | ୧୩୮ |
| ୬୬ । କବିର ବେଦନା | ଶ୍ରୀ ଚନ୍ଦ୍ରଶେଖର ମିଶ୍ର, ଲ୍. ଏଲ., ଡି. ଇଡି. | ୧୪୦ |
| ୬୭ । ଅପ୍ରବଚନ | | ୧୪୩ |
| ୬୮ । ସଂଗ୍ରାମର ଉକ୍ତି | ୰ ମଧୁସୂଦନ ଦାସ | ୧୪୯ |
| ୬୯ । ଉତ୍କଳ-ସନ୍ତାନ | ,, | ୧୫୩ |
| ୭୦ । ଜାତିଇତିହାସ | ,, | ୧୫୬ |

କୋଇଲି-ରଚନା ଓଡ଼ିଆ ସାହିତ୍ୟର ଗୋଟିଏ ମୌଳିକ ବୈଶିଷ୍ଟ୍ୟ । ଭାରତର ଅନ୍ୟ କୌଣସି ପ୍ରାଦେଶିକ ସାହିତ୍ୟରେ କୋଇଲି-ରଚନା ଦେଖାଯାଏ ନାହିଁ । ଚଉତିଶା ପରି ଯେତେକ କୋଇଲିର ପଦଗୁଡ଼ିକର ଆଦ୍ୟ ଅକ୍ଷର କ୍ରମାନୁସାରେ 'କ'ଠାରୁ 'କ୍ଷ' ପର୍ଯ୍ୟନ୍ତ ବର୍ଣ୍ଣଦ୍ୱାରା ରଚିତ । କୋଇଲି-ରଚନା ବହୁକାଳରୁ ଉତ୍କଳର ପୁରପଲ୍ଲୀରେ ସମାଦୃତ ।

# କେଶବ କୋଇଲି

୬ ମାର୍କଣ୍ଡ ଦାସ

କୋଇଲି ! କେଶବ ଯେ ମଥୁରାକୁ ଗଲେ
କାହା ବୋଲେ ଗଲେ ପୁଅ ବାହୁଡ଼ି ନଇଲେ । ଲୋ କୋଇଲି । ୧ ।
କୋଇଲି ! ଖଣ୍ଡ କ୍ଷୀର ଦେବ ମୁଁ କାହାକୁ
ଖାଇବାର ପୁଅ ଗଲେ ମଥୁରାପୁରକୁ । ଲୋ କୋଇଲି । ୨ ।
କୋଇଲି ! ଗଲେ ପୁଅ ବାହୁଡ଼ି ନଇଲେ
ଗହନ ତ ବୃନ୍ଦାବନ ଶୋଭା ନ ପାଇଲେ । ଲୋ କୋଇଲି । ୩ ।
କୋଇଲି ! ଘର ମୋର ନ ମଣନ୍ତି ନନ୍ଦ
ଘଡ଼ିଏ ନ ଦେଖେ ପୁତ୍ର ନ ଥିଲେ ଗୋବିନ୍ଦ । ଲୋ କୋଇଲି । ୪ ।
କୋଇଲି ! ନନ୍ଦ ଦେହ ପାଷାଣେ ଗଢ଼ିଲେ
ନୟନେ କଜ୍ଜ୍ୱଳ ଦେଇ ରଥେ ବସାଇଲେ । ଲୋ କୋଇଲି । ୫ ।
କୋଇଲି ! ଚନ୍ଦ୍ରଥାଇ କଟିସୁ ମେଖଳୀ
ଚକିତ ହୋଇଲେ ଶୁଣି ନୂପୁରର ବାଣୀ । ଲୋ କୋଇଲି । ୬ ।
କୋଇଲି ! ଛଟେକ ମୁଁ ମାଇଲି ପୂରୁବେ
ଛାଡ଼ ଅବା ଗଲେ କୃଷ୍ଣ ସେହି ପରାଭବେ । ଲୋ କୋଇଲି । ୭ ।
କୋଇଲି ! ଦୂତପଣେ ଅଇଲେ ଅକ୍ରୁର
ଯାହା ବୋଲି ଭଣ୍ଡିନେଲେ ବସାଇ ରଥର । ଲୋ କୋଇଲି । ୮ ।
କୋଇଲି ! ଝୁରୁ ଝୁରୁ ଲୁହ ନ ରହଇ
ଝଗଡ଼ା ସାରଣ କୃଷ୍ଣ ମଥୁରା ରହିଲେ । ଲୋ କୋଇଲି । ୯ ।
କୋଇଲି ! କଣାକାଳେ ହର ମାଗେ ଗୃହ
ନୟନ ଟେକିଣ ତାଙ୍କୁ ସନ୍ତଥାନ୍ତି ନନ୍ଦ । ଲୋ କୋଇଲି । ୧୦ ।

କୋଇଲି ! ଠହ ଠହ ହସୁଥାନ୍ତି କୋଳେ
ଠଳ ଠଳ ହେଉଥାନ୍ତି ଝୁଲିବାର ବେଳେ । ଲୋ କୋଇଲି । ୧୧ ।
କୋଇଲି ! ଠଣ ଯେ ସୁନ୍ଦର ବେନି ପୋଏ
ଠକ ଭଣ୍ଡିଗଲେ କୃଷ୍ଣ ନଇଲେ ଭେଢ଼ାଏ । ଲୋ କୋଇଲି । ୧୨ ।
କୋଇଲି ! ଡାକଲେ ଭୁଷଇ ଯେସନ୍ତେ ଶାରି
ଢାଳଚନ୍ଦ୍ର ଶୁଆ ପ୍ରାୟେ ଭୁଷୁଥାନ୍ତି ହରି । ଲୋ କୋଇଲି । ୧୩ ।
କୋଇଲି ! ଢଳୁଛନ୍ତି ମାଏ ଯଶୋବନ୍ତୀ
ଣାଳେ ହସାଇଲି ମୋର ପୁତ୍ର ଶିଶୁପଣ । ଲୋ କୋଇଲି । ୧୪ ।
କୋଇଲି ! ଅନେକ ହିଂସିଲା ରାଯୁ କଂସ
ଅଣହେଲା କରଣ ଅପଣ୍ଡେ ଗଲା ନାଶ । ଲୋ କୋଇଲି । ୧୫ ।
କୋଇଲି ! ତନୁରେ ତା ଲେପୁଇ କୁଙ୍କୁମ
ତନୟେ ଖେଳାଉଥାନ୍ତି ଭାଇ ବଳରାମ । ଲୋ କୋଇଲି । ୧୬ ।
କୋଇଲି ! ଥନ ଭୁଞ୍ଜି କ୍ଷୀର ପିଆଇଲି
ଥବିର ବାଳକୁ ପୁନ ଦେଖି ନ ପାରିଲି । ଲୋ କୋଇଲି । ୧୭ ।
କୋଇଲି ! ଦଉଡ଼ିରେ ବାନ୍ଧିଲି ପୁତ୍ରକୁ
ଦାମୋଦର ରାଗେ ଗଲେ ମଥୁରାପୁରକୁ । ଲୋ କୋଇଲି । ୧୮ ।
କୋଇଲି ! ଧନ୍ୟ ସେହୁ ଦଇବଙ୍କ ନାରୀ
ଧର୍ମ ଥିଲା ପୁତ୍ର ଗୋଟି ହୋଇଲା ତାହାର । ଲୋ କୋଇଲି । ୧୯ ।
କୋଇଲି ! ନ ଶୋଭଇ ଗୋପପୁର ମୋର
ନାରାୟଣ ଗଲା ଦିନୁଁ ମଥୁରାନଗର । ଲୋ କୋଇଲି । ୨୦ ।
କୋଇଲି ! ପବିତ୍ର ପୁରୁଷ ମୋ ମାଧୋଇ
ପବିତ୍ର ମୁଁ ହୋଇଥିଲି କୃଷ୍ଣମୁଖ ଚୁମ୍ବି । ଲୋ କୋଇଲି । ୨୧ ।
କୋଇଲି ! ଫଳିବାକୁ ନାହିଁ ମୋର ଆଶ
ଫଳିବାର ଫଳ ଗଲା ବସୁଦେବ ପାଶ । ଲୋ କୋଇଲି । ୨୨ ।

କୋଇଲ ! ବହୁତ ସନ୍ଥଳ ତାଙ୍କ ଅଳ
ବଢ଼ାଇ ଶରଧା ଭୁଙ୍ଗି ଗଲେ ବନମାଳୀ । ଲୋ କୋଇଲି ।୨୩।

କୋଇଲି ! ଭଣ୍ଡି ମୋତେ ଗଲେ ବେନ ଚପାଏ
ଭାଇ ତାଙ୍କ ବଳରାମ ନଇଲେ ଭେଟ୍ଭାଏ । ଲୋ କୋଇଲି । ୨୪ ।

କୋଇଲି ! ମଥୁରାକୁ ଯିବି କି ମୁଁ ଧାଇଁ
ମାଧବ ମଧୁସୂଦନ ଆଣିବି କଢ଼ାଇ । ଲୋ କୋଇଲି । ୨୫ ।

କୋଇଲି ! ଯିବେ ଯେ ଆସିବେ ବୋଲି ଗଲେ
ଜଗତଜୀବନ ପ୍ରଭୁ ଭେଟ୍ଭାଏ ନଇଲେ । ଲୋ କୋଇଲି । ୨୬ ।

କୋଇଲି ! ଗନ୍ଧ ବସ୍ତ୍ର ଅଳଙ୍କାରମାନ
ରାମ କୃଷ୍ଣ ଶ୍ରୀଅଙ୍ଗକୁ ଦଣେ ଶୋଭିବନ । ଲୋ କୋଇଲି । ୨୭ ।

କୋଇଲି ! ଲକ୍ଷ୍ମୀବନ୍ତ ଅଟେ ନାରାୟଣ
ଲଳାଟରେ ନାମ ଦେଲେ ସେ ଗର୍ଗ ବ୍ରାହ୍ମଣ । ଲୋ କୋଇଲି ।୨୮।

କୋଇଲି । ବୃନ୍ଦାବନ ନ ଶୋଭଇ ମୋର
ବଂଶୀ କଏ ଚରାଇବ ଯମୁନାର ତୀର ଲୋ । କୋଇଲି ।୨୯ ।

କୋଇଲି ! ଶ୍ରୀମନ୍ତ ପୁରୁଷ ମୋ ମାଧୋଇ
ଶିଶିରଙ୍ଗ ଗଙ୍ଗ ଦିନୁ ନନ୍ଦ ହେଲେ ବାଇ । ଲୋ କୋଇଲି । ୩୦ ।

କୋଇଲି ! ଶରୀର ମୋହେ ଦିନୁ ଦିନୁ କ୍ଷୀଣ
ସେହୁମତ କ୍ଷୀଣ ହେଲେ ମୋ ନନ୍ଦରାଜନ । ଲୋ କୋଇଲି ।୩୧।

କୋଇଲି ! ଯାତଦିନ ଇନ୍ଦ୍ର ବୃଷ୍ଟି କଲା
ସପତବରଷ ପୁଅ ମନ୍ଦର ଧଇଲା । ଲୋ କୋଇଲି ।୩୨ ।

କୋଇଲି ! ହାଇ ଯେ ମାରଇ ପୁବ ତୁଣ୍ଡ
ହୃଦୟେ ଦଶିଲା ତାର ସପତ ବ୍ରହ୍ମାଣ୍ଡ । ଲୋ କୋଇଲି । ୩୩ ।

କୋଇଲି ! ଷଢ଼ଣି ବନ୍ଧଣି ଭୁଜଦଣ୍ଡ
କ୍ଷମା କର ଦୋଷ ମୋର ଭଣେ ମାରକଣ୍ଡ । ଲୋ କୋଇଲି । ୩୪ ।

# କାନ୍ତ କୋଇଲି

### ୰ ବଳରାମ ଦାସ

କୋଇଲି ! କାନ୍ତ ମୋର ଗଲେ ମୃଗ ମାରି
କପଟେ ରାବଣ ମୋତେ ନେଉଅଛୁ ଧରି । ଲୋ କୋଇଲି । ୧ ।
କୋଇଲି ! ଖଳ ବୋଲି ଜାଣି ନ ପାରିଲି
ଖଳ ଯେ କନକମୃଗ ଦେଖି ଲୋଭ କଲି । ଲୋ କୋଇଲି । ୨ ।
କୋଇଲି ! ଗୁରୁହୁଙ୍କା ବଳିଲା ମୋହର
ଗେଲେ ମୁଁ ବୋଇଲି ରାମ ଏ କୁରଙ୍ଗ ମାର । ଲୋ କୋଇଲି । ୩
କୋଇଲି ! ଘଟଣା ଯା କରିଛୁ ବିଧାତା ।
ଘୋରବନେ ମୃଗମାରି ଗଲେ ମୋ କରତା ଲୋ । କୋଇଲି । ୪ ।
କୋଇଲି । ଲକ୍ଷ୍ମଣଙ୍କୁ ଜଗାଇ ଦୁଆର
ନାରାଚରେ ମୃଗ ବନ୍ଧ ଗଲେ ରଘୁବୀର । ଲୋ କୋଇଲି । ୫ ।
କୋଇଲି ! ଗୃପଧାଇ ଗଲେ ରଘୁନାଥ
ଗୃପେ ଶର ସନ୍ଧି ମୃଗ ପ୍ରାଣ କଲେ ହତ । ଲୋ କୋଇଲି । ୬ ।
କୋଇଲି । ଛାଡ଼ିବାର ବେଳେ ମୃଗ ପ୍ରାଣ
ଛଦ୍ମରେ ଡାକିଲା ମୋତେ ରଖ ହେ ଲକ୍ଷ୍ମଣ । ଲୋ କୋଇଲି । ୭ ।
କୋଇଲି ! ଜାଣି ନ ପାରିଲି ଛନ୍ଦ ମୁହିଁ
ଯାଅ ବୋଲି ଲକ୍ଷ୍ମଣଙ୍କୁ ଦେଲି ପଠିଆଇ । ଲୋ କୋଇଲି । ୮ ।
କୋଇଲି । ଝଟତରେ ଯାଆନ୍ତେ ଲକ୍ଷ୍ମଣ
ଝାଡ଼ର ଭିତରେ ଲୁଚିଥିଲାଟି ରାବଣ । ଲୋ କୋଇଲି । ୯ ।
କୋଇଲି । ନିର୍ମଳ ତପସ୍ୱୀ ରୂପ ଧରି
ନିର୍ଭୟେ ବସିଲା ଅସି ଦୁଆର ଅବୋରି । ଲୋ କୋଇଲି । ୧୦ ।

କୋଇଲି ! ଯେଉଁଣେ କହଇ ମାୟାଯତି
ଯେବେ ମୋତେ ଫଳ ଭିକ୍ଷା ଦିଅ ମହାସତୀ । ଲୋ କୋଇଲି । ୧୧ ।
କୋଇଲି ! ଠକ କଥା ଜାଣି ନ ପାରିଲି
ଠକଯତି କରେ ପୁଣି ଫଳ ଭିକ୍ଷା ଦେଲି । ଲୋ କୋଇଲି । ୧୨ ।
କୋଇଲି ! ତାହାର ସ୍ୱବଣ ବଡ଼ ଦୁଷ୍ଟ
ଡାହାଣ ଭୁଜକୁ ମୋର ଧରିଲା ପାପିଷ୍ଠ । ଲୋ କୋଇଲି । ୧୩ ।
କୋଇଲି ! ତକ୍ଷଣ ଗୃହିଁଲା ଆକାଶକୁ
ତାଲେ ରଥ ଶୂନ୍ୟ ଆସି ମିଳିଲା ତାହାକୁ । ଲୋ କୋଇଲି । ୧୪ ।
କୋଇଲି ! ଆଣି ମୋତେ ରଥରେ ବସାଇ
ଆକାଶମାର୍ଗରେ ରଥ ନେଲା ତହୁଁ ବାହି । ଲୋ କୋଇଲି । ୧୫ ।
କୋଇଲି ! ତ୍ୱରିତେ ତା ରାଜ୍ୟରେ ମିଳିଲା
ତହୁଁ ଅଶୋକବନରେ ମୋତେ ଲୁଚାଇଲା । ଲୋ କୋଇଲି । ୧୬
କୋଇଲି ! ଥାନ୍ତି ଜଗି ସହସ୍ରେ ଅସୁରୀ
ଥାନ ଛିଡ଼ିଏ ନ ଥାଏ ବସିଥାନ୍ତି ଘେରି । ଲୋ କୋଇଲି । ୧୭ ।
କୋଇଲି ! ଦଶା ଗୃଢ ଦୁଇ ମୋର ଏକ
ଦିନ ନ ସରଇ କରନ୍ତିରେ କଷ୍ଟ ଦଶ । ଲୋ କୋଇଲି । ୧୮ ।
କୋଇଲି ! ଧାତା ମୋତେ ଏତେ କଷ୍ଟ ଦେଲା
ଧରାଇ ଅସୁରଘରେ ବନ୍ଦ କରାଇଲା । ଲୋ କୋଇଲି । ୧୯ ।
କୋଇଲି ! ନାରାଚ ଘେନିଣ ରଘୁନାଥ
କପିଟକେ ମୃଗ ମାରି ଆସି ବେନଭ୍ରାତ । ଲୋ କୋଇଲି । ୨୦ ।
କୋଇଲି ! ପର୍ଣ୍ଣକୁଟୀ ଦ୍ୱାରେ ଡାକୁଥିବେ
ପଥୁରୁ ପଶାନ୍ତୁ ଜଳ ଦିଅ ସୀତା କହିବେ । ଲୋ କୋଇଲି । ୨୧ ।
କୋଇଲି ! ଫୁଟି ଡାକୁଥିବେ ବେନଭାଇ
ଫୁଟିକୁଁ ତୃଷାରେ ଜଳ ଦିଅ ବଇଦେହୀ । ଲୋ କୋଇଲି । ୨୨ ।

କୋଇଲ । ବୋଲ ଯେବେ ନ ଶୁଣିବେ ମୋର
ବୋଲିବେ କେ ଧେନଗନ୍ଧ ସୀତାଙ୍କୁ ଅମ୍ବର । ଲେ କୋଇଲି । ୨୩ ।
କୋଇଲ । ଭୁଇଁ ବେନି ବନେ ବୁଲୁଥିବେ
ବୃକ୍ଷଲୋକ ଦେଖିଲେ ବାରତା ପଚ୍ଚରିବେ । ଲେ କୋଇଲି । ୨୪ ।
କୋଇଲ । ମଢ଼ିଅ-ଦୁଆରେ ବେନି ଭାଇ
ମୋତେ ଡାକୁଥିବେ କାନ୍ତ ମୃଗଭ୍ରମ ଥୋଇ । ଲେ କୋଇଲି । ୨୫ ।
କୋଇଲ । ଜୀବ ଯିବା ପ୍ରାପ୍ତ ହେଉଥିବେ
ଯାମକ ଯେ ଲକ୍ଷ ଯୁଗ ପର୍ଯ୍ୟନ୍ତ ମଣିବେ । ଲେ କୋଇଲି । ୨୬ ।
କୋଇଲ । ସ୍ତନ୍ଥିବେ ମୋହୁ ନାମ ଧରି
ସ୍ତନ ଦବା ନୟନରୁ ବହୁଥିବ ବାରି । ଲେ କୋଇଲି । ୨୭ ।
କୋଇଲ । ଲଙ୍କାର ରାବଣ ଅଣିବାର
ଲକ୍ଷ୍ମଣ ସହତେ କାନ୍ତେ ନୋହିଲ୍ଲ ଗୋଚର । ଲେ କୋଇଲି । ୨୮ ।
କୋଇଲ । ବାରତା ପାଇଲେ ପ୍ରାଣନାଥ
ବାରିନିଧି ବାନ୍ଧଣ ଅସିବେ ବେନି ଭ୍ରାତ । ଲେ କୋଇଲି । ୨୯ ।
କୋଇଲ । ଶତ୍ରୁ ରାବଣକୁ ବନାଶିବେ
ଶାଢ଼ୀ ବାନ୍ଧ ବିଭୀଷଣେ ରାଜା କରାଇବେ । ଲେ କୋଇଲି । ୩୦ ।
କୋଇଲ । ଶ୍ରୀରାମ ଲକ୍ଷ୍ମଣ ବେନି ଭାଇ
ଶିଷ୍ଟ ପାଳ ଦୁଷ୍ଟ ନାଶି ଜଣ୍ଟାରନ୍ତି ମହୀ । ଲେ କୋଇଲି । ୩୧ ।
କୋଇଲ । ଶୁଦ୍ଧେ ହୋଇ ଲଙ୍କାରେ ପ୍ରବେଶ
ସଙ୍ଗେ ନେଇ ମୋତେ ଚଳିଯିବେ ନିଜ ଦେଶ । ଲେ କୋଇଲି । ୩୨
କୋଇଲ । ହେବେ ମୋତେ ଧେନି ଅଭିଷେକ
ହରଷେ ଝଟିବେ ତାଙ୍କୁ ପାଦ ମନ୍ତ୍ରୀ ଲୋକ । ଲେ କୋଇଲି । ୩୩ ।
କୋଇଲ । କ୍ଷମେ ରାମ ଅଯୋଧ୍ୟା ପ୍ରବେଶ
କ୍ଷପନ୍ଦେ ଭଣିଲେ ଗୀତେ ବଳରାମ ଦାସ । ଲେ କୋଇଲି । ୩୪ ।

# ପାର୍ବତୀ ବିବାହ

( କଳସା ଚଉତିଶା )

୬ ବସ୍ତା ଦାସ

ଏହି କବି ସାରଳା ଦାସଙ୍କ ପୂର୍ବବର୍ତ୍ତୀ । ସାରଳା ଦାସ କଳସା ଚଉତିଶାର କଥା ଉଲ୍ଲେଖ କରିଅଛନ୍ତି । ତେଣୁ ୧୪୦୦ ଶତାବ୍ଦୀରେ ସେ ଜୀବିତ ଥିଲେ । ବସ୍ତା ଦାସଙ୍କ କଳସା ଚଉତିଶାର ଭାଷା ସରଳ, ହୃଦୟଗ୍ରାହୀ ଓ ହାସ୍ୟୋଦ୍ଦୀପକ ।

କହନ୍ତି କାମିନୀ ଶୁଣ ହେମନ୍ତଦୁଲଣି
କାହିଁ ବରେ ବରିଲେ ତୁମ୍ଭର ପିତାମଣି ।
କୁଳ ମୂଳ ଗୋତ୍ର ଅବ ନାହିଁ ଜଣା ତାର
କନକ ବେଦୀରେ ବୁଢ଼ା ବସିଛି ମଝର । ୧ ।

ଖୁଁ ଖୁଁ ଖାସ ସାହାସେଣ ପେଲୁଅଛି ଧଇଁ
ଖର ନିଶ୍ୱାସ ବୁଢ଼ାର ମାଥ ଲାଗେ ଭୂଇଁ ।
ଖଣ୍ଡିଆ ଯୋଗୀର ସଙ୍ଗେ ନାହିଁ ଯାନ ତାର
ଖଣ୍ଡିଆ ବଳଦ ବୁଢ଼ା ବାନ୍ଧିଛି ପାଖର । ୨ ।

ଗୋଡ଼ହାଡ଼ି ଶଣଫୁଲ ଗନ୍ଧୁଛି ନୟନ
ଗଣ୍ଡସ୍ଥଳେ ଲମ୍ବଇ ମୁଦୁଗ ଦରଶନ ।
ଗ୍ୟାନଭ୍ରଷ୍ଟ ହୋଇଛନ୍ତି ଦେବଳ ତା ମଠ
ଗୁଣ ଲକ୍ଷଣ ବୁଢ଼ାର ନାହିଁ ତଥି ଗଢ । ୩ ।

ଘର ଦ୍ୱାର କେବଣ ଦେଶରେ ତଥ୍ୟ ନାହିଁ
ଘଣ୍ଟୁଥିଲା ବହୁ ଅଣି ଏମନ୍ତ କହଇ ।

ଘଟ ଘଟ ହୋଇ ନାଳ    ବହଇ ତୁଣ୍ଡର
ଘନ କଣ୍ଠା ଲେଗୁ ଏକ    ବାନ୍ଧଛୁ ମୁଣ୍ଡର । ୪ ।

ନ ଚିହ୍ନଇ ମନୁଷ୍ୟ ସେ    ନ ଦେଖେ ନୟନ
ନିକଟେ ଦେଖିଲେ ନ    ଶୁଣେ ତା ବେନି କର୍ଣ୍ଣ ।
ନଖ ମୁଖ ଚକ୍ଷୁସ୍ଥାନ    ପଶିଲା ଭିତର
ନୁଆଁ ଖଣି ଖଣା ପ୍ରାୟେ    ଦିଶୁଛୁ ଉଦର । ୫ ।

ଚୈର୍ତ୍ତିକ ମାଡ଼ଣ ବୁଢ଼ା    ବସିଛୁ ମଧେଣ
ଚଉପାଶ ବେଢ଼ିଛନ୍ତି    ଦେବତା ବ୍ରାହ୍ମଣ ।
ଚକେଶ୍ୱ ବୁଢ଼ାକୁ ଦେଖି    ଚକିତ ହୋଇଲୁ
ଚିନ୍ତାସାଗରରେ ସଖି    ନଷ୍ଟେଁ ବୁଡ଼ିଲୁ । ୬ ।

ଛନ୍ନ ଅଙ୍ଗେ ଛିଣ୍ଡା କନ୍ଥା    ଲଗିଛୁ ତାହାର
ଛାର ପାଉଁଶ ଲେଗୁଏ    ଲେପିଛୁ ଶରୀର ।
ଛନ୍ଦଅଛୁ ସର୍ପମାଳ    ମୁଣ୍ଡେ ଆଭରଣ
ଛଟକେ ଭେଳକି ବୁଢ଼ା    ଲଗାଇଲା ଜାଣ । ୭

ଜଙ୍ଗମକୁ ପ୍ରାପତ    ହୋଇଲୁ ଚନ୍ଦ୍ରମୁଖି
ଯାହା ତୋର କପାଳରେ    ବିଧି ଅଛୁ ଲେଖି ।
ଯୁବାକାଳେ ପଞ୍ଚେ ଯୋଗ    ଭୁଞ୍ଜିବୁ ନାଁ ଯାହା
ଜାଣୁ ଜାଣୁ ଜଙ୍ଗମ    ଗୋଠାକୁ ହେଲୁ ବାହା । ୮ ।

ଝୁମୁ ଝୁମୁ ବାଜ ଘଣ୍ଟି    ଘାଗୁଡ଼ି ଲେଗୁଏ
ଝମକୁଣ ଅଛୁ କରେ    ତ୍ରିଶୂଳ ଗୋଟାଏ ।
ଝୁଲୁ ହୋଇ ଝିକି ହୋଇ    ପଡ଼ୁଛୁ ଢ଼ଳାଇ
ଝିଅ କ ନାରୁଣୀ ପ୍ରାୟେ    ଦଶିବୁ ଗୋ ତୁହି । ୯ ।

ଝସ୍ତୁରେଣ କହେ କଥା — ଝାଙ୍କୁଟିଣ ଦାନ୍ତ
ନ ଆସଇ ବାଣୀ ତାର — ହୁହୁଁ ହୋଏ ଅନ୍ତ ।
ଝଣ ଦାଢ଼ି ଲୁଟ ତାରୁ — ନ ମିଳେ ଭୃଣ୍ଡାର
ଝଣାଙ୍କାଳେ ଯେ ଦେଖିଲେ — ଭୟେ ତଜି ପାର । ୧୦

ଟଳ ଟଳ ହୋଇ ଠେଙ୍କ — ବସି ନ ପାରଇ
ଟାକୁଆ ଗାଲ ପାକୁଆ — ଦାନ୍ତ ଅଧ ନାହିଁ ।
ଟକ ଟକ ହୋଇ ତା — ଲାଗଇ ବେନ କର୍ଣ୍ଣ
ଟାକର ଝାମୀଙ୍ଗ ସେ — ଅଛନ୍ତି ଅପାବନ । ୧୧ ।

ଠୁଳ କରିଥିବା ଭିକ୍ଷା — ମାଗିବାର ଧନ
ଠକିଥିଲ ଦେବ ଛବୋଳ — ହେମନ୍ତସ୍ୱଜନ ।
ଠକର ସ୍ୱଭାବ ସେ ଗୋ — ଲଗାଇଲା ଆଣି
ଠାବେ ହେବୁ ନାଶ ଗଲୁ — ହେମନ୍ତଦୁଲଣି । ୧୨ ।

ଡାକ ଏ ବଜାଉଅଛୁ — ଥାଳେକ ଝୋଳର
ଡଙ୍କର ଡାଙ୍ଗୁଆ ଯେନ — କରିବୁ ଗୋ ଘର ।
ଡମ୍ବରୁଧରଙ୍କୁ ସେବା — କଲୁ ପରିମାଣି
ଡଙ୍କର ବର ପାଇଲୁ — ଦେଲେ ଶୂଳପାଣି । ୧୩

ତୋଙ୍ଗ ତପସ୍ୱିଙ୍କ ମା ଗୋ — ବଳାଇଲୁ ଚଉ
ତୋହର ଯୋଗୀଙ୍କ ମା ଗୋ — ହୋଇଲୁ ପ୍ରାପତ ।
ତମାଳ ନ କର ମୁଁ ଯେ — କହୁଅଛୁ ସତ
ତାଳେ ହେବୁ ନାଶ ଗଲୁ — ହେମନ୍ତଦୁହିତ । ୧୪ ।

ଅଣାଇଲେ ସପେ କାହୁଁ — ବରେକ ବରଣ
ଅଣମନୁଷ୍ୟ ଯେ ସେ — ଅଛନ୍ତି ଅପାବନ ।

ଅଶଖ ସାରିଲେ ମାଏ  ଝିଏ ଦୁହେଁ ହୋଇ
ଅଣଜ୍ୟାଡ଼ରେ ଶୀଘ୍ରେ  ଦେଖାଇଲେ ନେଇ । ୧୫

ଟିଷ୍ଟ ଶରବର ବାଳୀ  ବାଜିଲା ହୃଦର
ଉଡ଼ତେ ପଡ଼ିଲା ଟଳି  ନିଜେ ତା ମନ୍ଦର ।
ତତକ୍ଷଣେ ଟେକି ଧରିଲେ  ତାହାଙ୍କର ଦାସୀ
ହୃଦତେ ମିଳିଲେ ମାଏ  କଣ୍ଠରେ ତା ଅସି । ୧୬ ।

ଅଭିଦ୍ୱର କରି ମାଏ  ବୋଲନ୍ତି ବଚନ
ଥିର କର ମନ ମା ଗୋ  ନୋହ ଅଚେତନ ।
ଥିଲା ଏତେକାଳ ମୋର  ଦୂଲଣା ହୋଇଣ
ଥନ ଯଉବନ କାଳେ  ଦେଉଛୁ ଜୀବନ । ୧୭ ।

ଦାଇନ କରି କହୁଛୁ  ଶୁଣ ମୋର ମାଏ
ଦନ୍ତେ ଛରଣ ଧରଣ  ଔଲଗଇ ପାଏ ।
ଦରିଦ୍ର ସ୍ୱାନ ବୁଡ଼ାକୁ  ଯେବେ ମୋତେ ଦେବୁ
ଦୁଇ ନୟନରେ ମୋର  ମରଣ ଦେଖିବୁ । ୧୮ ।

ଧରାଧରି ହୋଇ ମାଏ  ଝିଅ.ବୋବାଇଲେ
ଧାଇ ମୂର୍ଦ୍ଧୁଲିମାନେ  'ଚନ୍ଦ୍ରଳ ପାଇଲେ ।
ଧାଇଁ ଅସି ତତକ୍ଷଣେ  ମିଳିଲେ ସ୍ୱଜନ
ଧର୍ମ ପୁଣ୍ୟକାହ୍ଲେ କପାଁ  କରୁଛ ରୋଦନ । ୧୯ ।

ନାହିଁ ଷ ସଂସାରମଧ୍ୟେ  ସ୍ୱକାର କୁମର
ନିଲଜ.ବୁଡ଼ାକୁ  ସୁନ୍ଦରୀଙ୍କ କଲ ବର ।
ନୋହିଲେ ବୁଡ଼ିବୁ ମାଏ  ଝିଅ ଦୁହେଁ ହୋଇ
ନୋହିଲେ ମରିବୁ  ସ୍ୱହସ୍ତରେ ବିଷ ଖାଇ । ୨୦

ପଠ ଯେନ ମାଣିକ୍ୟ      ମୁକୁତା ଗୁନ୍ଥା ନାହିଁ
ଯୋଡ଼ୁ ଯୋଡ଼ୁ ଜୀବନ      ଯବନ ରଜା ହୋଇ ।
ପିଅର ଜନନୀ ତୁମ୍ଭ      ଜୀବନ ଧିଙ୍କତ
ପାଳୁଅ ବୁଢ଼ାକୁ ଦେଇ      ଯେନ ଲେଁଢ଼ ବନ୍ଧ ।। ୨୧

ଫେରମାସ ଦେଇଛନ୍ତି      ହେମନ୍ତରଜନ
ଫାଇ କେତେ କହିବା ଗୋ      ସେହୁ ବଡ଼ଜଣ ।
ଫଳେଣ ଜାଣିବା ପଛେ      ତାହାଙ୍କର ଗୁଣ
ଫରପେ ସେବଲେ ଗୌର      ପାଇବ କାରଣ । ୨୨ ।

ବଗୁର ନ କର ମାଏ      ଝିଅ ଦୁହେଁ ତୁମ୍ଭେ
ବିକଳ ମନରୁ ଛଡ଼ି      କହୁଅଛୁଁ ଅମ୍ଭେ ।
ବ୍ରହ୍ମା ବିଷ୍ଣୁ ଦେବତାଏ      ଛନ୍ତି ତାଙ୍କୁ ବେଢ଼ି
ବଡ଼ ଭାଗ୍ୟବନ୍ତ ଗୌରି      ପୁଣ୍ୟେ ଅଛି ବଢ଼ି । ୨୩ ।

ଭାଲପଟେ ଲେଖନ ଯା      କରନ୍ତି ବିଧାତା
ଭଲ ଭାଗ୍ୟବନ୍ତ ଗୌର      ଅମ୍ଭର ଦୁହିତା ।
ଭୋଜନର ବେଳେ ରାଣୀ      ମିଳିଲକ ଅପି
ଭିତରେ ମଣୋହି ସଞ୍ଚି      ଭିଅଣ କରପି । ୨୪ ।

ମହାଦେଈ ମନବ୍ୟଥା      ଛଡ଼ାଇ ରଜନ
ମିଳିଲେ ଯେତେ ସର୍ବଜନ      ବଖର ଅସ୍ଥାନ ।
ମଙ୍ଗଳଣ କଲେ ତହିଁ      ହଳଦୀ ଚନ୍ଦନ
ମଙ୍ଗଳ ମହୁରୀ ଶଙ୍ଖ      ବାଜେ ଘନ ଘନ । ୨୫ ।

ସୁବତୀ ସକଳ ମିଳି      ହୁଳହୁଳି ଦେଲେ
ଜଗମୋହନୀଙ୍କ ଦିବ୍ୟ      ବେଶ କରାଇଲେ ।

ଯାଇଁ ଫୁଲ କନଅର		ଖୋସାରେ ଖୋସିଲେ
ଯତନେ କସ୍ତୁରୀ ଟିତା		କପାଳରେ ଦେଲେ । ୨୬ ।

ରତ୍ନ ଓଢ଼ିଅଣୀ ଚୁଳ		ମଥାରେ ସୀମନ୍ତ
ରାମ ଅଭିଷେକ ଚୂଡ଼ା		ନାସେ ଗଜମୋତି ।
ରୁଣଝୁଣ ବାଜୁଅଛି		ପୟରେ ନୂପୁର
ରୁଗୀବଦଳଲୋଚନେ		ରଞ୍ଜିଲେ କଜ୍ଜଳ ।୨୭ ।

ଲତାବଳ ପାଟେ ପିନ୍ଧି		ନେତେ ଉପୁରାଣ
ଲାବଣ୍ୟ ଚନ୍ଦ୍ରବଦନୀ		ଲକ୍ଷେ ଲକ୍ଷ୍ମୀ ଗୁଣ ।
ଲବଣଚର୍ଚ୍ଚିତ ପୂଜା		ଆଣି ବଢ଼ାଇଲେ
ଲଳତେ ମଙ୍ଗଳ ଗୀତ		କାମିନୀ ଗାଇଲେ । ୨୮ ।

ବୃନ୍ଦା ଅଗ୍ରୁଫି ତୋଇଣ		ବେଦୀରେ ବସିଲେ
ବରକୁ ଯେ ଦଣଜଣ		ତୋଳ ବସାଇଲେ ।
ବାସବର୍ଗ ବନ୍ଧୁ ବାକ୍ୟ		ଅସରଲା ସୂତା
ବସିଲେ କଟମ୍ବା ମାଜ୍ଞ		ବାଳୀ ଦେନି ପିତା । ୨୯ ।

ଶିରରେଣ ବାନ୍ଧିଲେ		ମୂଳୁଟ ପିଞ୍ଚ ଶାଖା
ଶୋଇପଡ଼ ବୁଢ଼ା ଖାସୁ		ଖାସୁ ଗନ୍ଧ ଦୁର୍ଦ୍ଧା ।
ଶାଶୁ ଅଦ ସମସ୍ତେ ଯେ		ବୋବାଳ ଛାଡ଼ିଲେ,
ସଚେତ ପାଇଲ ବୁଢ଼ା		ତୋଳ ବସାଇଲେ । ୩୦ ।

ସନ୍ତୋଷେ ହସ୍ତ ଯୋଡ଼ଣ		କଲେଣ ଯେ ନାରୀ
ସର୍ବେ ଯେ ଦେବତାଏ		ଗଲେ ଯେଝା ପୁରୀ ।
ସନ୍ତୋଷେଣ ନାଗ୍ର ମିଳ		ଜୁଅ ଖେଳାଇଲେ
ସତ୍ୱରେଣ ବରକନ୍ୟା		ବେଦୀରୁ ଉଠିଲେ । ୩୧ ।

ସମସ୍ତେ ବସିଣ ପଞ୍ଚୁ- ଗ୍ରାମାଦ୍ଧ ସାଜିଲେ
ସଖୀ ସଙ୍ଗାତୁଣୀମାନେ ମନ୍ତ୍ରଣଯ୍ୟା କଲେ ।
ସୁରଗଣେ ବରକନ୍ୟା କରୁଛନ୍ତି ସ୍ତବ
ଶୋଭା ପାଉଛନ୍ତି ଦୁହେଁ ରତି କାମଦେବ । ୩୨।
ହେମନ୍ତର ରାଣୀ ଦେଖି ସନ୍ତୋଷ ହୋଇଲେ
ସ୍ନାନ ପରପଞ୍ଚ ବେଶ ପଙ୍କ୍ତି ପକାଇଲେ ।
ହୋଇଲେ ସନ୍ତୋଷ ଯେ ସକଳ ଲୋକ ଦେଖି
ହାସ୍ୟ କରୁଛନ୍ତି ସଖୀ ସଙ୍ଗାତୁଣୀ ଦେଖି । ୩୩।
ସକଳେ ଚଢ଼ିଣି ସାରି କାଦ ଖେଳ ଗଲେ
ଛ ଘାତ ଅଷ୍ଟ ମଙ୍ଗଳା ଉତ୍ସବ ସାରିଲେ ।
ସିଦ୍ଧଗଡ ଠାକୁର ସେ କପିଳାସେ ସ୍ଥିତି
ଦୁର୍ବୁଦ୍ଧି ବସ୍ତା ଦାସ କଳସା ପଢ଼ନ୍ତି । ୩୪ ।

# ଏକଲବ୍ୟ ବା ଜାରାଶବରର ଅସ୍ତ୍ରଶିକ୍ଷା

## ୧୬ ଶୂଦ୍ରମୁନି ସାରଳା ଦାସ

କବି ସାରଳା ଦାସ କଟକ ଜିଲ୍ଲା ଅନ୍ତର୍ଗତ ତେନ୍ତୁଳିପଦା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ମୌଳିକ ନାମ ଥିଲା ସିଦ୍ଧେଶ୍ୱର ଦାସ । ତାଙ୍କ ଗ୍ରାମର ନିକଟବର୍ତ୍ତୀ ଝଙ୍କଡ଼ଠାରେ ପ୍ରସିଦ୍ଧ ସାରଳା ଠାକୁରାଣୀଙ୍କ ମନ୍ଦିର ପ୍ରତିଷ୍ଠିତ । କବି ସାରଳାଙ୍କର ପ୍ରଧାନ ଭକ୍ତ ଥିଲେ । ତାଙ୍କ କୃପାରୁ ଗ୍ରନ୍ଥ ରଚନା କରିଥିବାର ମଧ୍ୟ ସେ ଲେଖିଅଛନ୍ତି । କପିଳେନ୍ଦ୍ରଦେବଙ୍କ ରାଜତ୍ୱ କାଳରେ ( ୧୪୩୫— ୧୪୬୯ ) କବି ଆବିର୍ଭୂତ ହୋଇଥିଲେ । ସାରଳା ଦାସଙ୍କ ରଚିତ ଓଡ଼ିଆ ମହାଭାରତ ଉତ୍କଳର ମୂଲ୍ୟବାନ୍ ଜାତୀୟ ସମ୍ପଦ । କବି ଏହି ଗ୍ରନ୍ଥରେ ସ୍ୱୀୟ ପ୍ରତିଭା, ବହୁଦର୍ଶିତା ଓ ଜ୍ଞାନବତ୍ତାର ଯେଉଁ ପରିଚୟ ଦେଇଅଛନ୍ତି ତାହା ଅସାଧାରଣ । କବି 'ବିଲଙ୍କା ରାମାୟଣ' ନାମକ ଏକ ଗ୍ରନ୍ଥ ଓ 'ଚଣ୍ଡୀ ପୁରାଣ' ମଧ୍ୟ ରଚନା କରିଥିଲେ ।

ଅଗସ୍ତି ବୋଇଲେ ଶୁଣ ବୈବସ୍ୱତ ମନୁ
ତାର ନାମେ କହୁଛି ଯେ ଅଜପତି ସୂନୁ ।
ଗଣ୍ଡା ଦୁଇଗୋଟି ମାରି ଧେନୁ ଅଛି ଯତ୍ନେ
ବାହୁଣା ଅଟେଡ଼ାଣିଲେ ମିଳେ ତୋଷମନେ
ମଥାରେ ମୟୂର ଫାଳ କଣ୍ଠେ ଗୁଞ୍ଜମାଳ
ଅଙ୍ଗେ ରଙ୍ଗ ଧୂଳି ସିନ୍ଧ ଲୋହିତ ଦୁକୂଳ ।

ଧାମଣା କାଠରେ ଧନୁ          କଣ୍ଟା ବାଂଶୀ ଗୁଣ
ତୁଣେ ଫିରିକ ନାରାଚ          ଡାଳ ଅଭରଣ ।

ଏସନକ ସ୍ୱରୂପେ ସେ          ଅଙ୍ଗପଢ ନାଢ
ଦ୍ରୋଣଙ୍କୁ ଦର୍ଶନ କଲ          ଅଖଡ଼ାରେଂଧାଢ ।

ଗଣ୍ଡା ଦେଖିଣ ହରଷ          ହେଲେ ଗୁରୁ ଦ୍ରୋଣ
କବଚ ବୋଲେ ହେ ଶିଷ୍ୟ          କରନ୍ତୁ ଅପଣ ।

ଯୁଧିଷ୍ଠିର ବୋଇଲେ ଯେ          ଥାଉ ଏ କବଚ
ବନରେ ଏହାର କାର୍ଯ୍ୟ          ଅଛଇ ବହୁତ ।

ଗଣ୍ଡା ଖୁରଣ୍ଟି ହରଣୀ          ମୃଗ ବାହୁଟିଅ
ଧର ଅଣିବ ଶମ୍ବର          ବରାହର ଛୁଅ ।

ଥାଉ ଥାଉ ବୋଲି ଅଣ୍ଡ          ଦେଲେ ଗୁରୁ ଦ୍ରୋଣେ
ଦୁର୍ଯ୍ୟୋଧନ ବୋଲେ କର୍ପା          ଭଣ୍ଡ ଅକାରଣେ ।

ଅର୍ଜୁନ ବୋଇଲେ ଥାଉ          ଥାଉ ଏ କବଚ
ବନଚର ଲୋକ କାର୍ଯ୍ୟ          ଏହାରେ ବହୁତ ।

ଶୁଣିଣ କୋପ କଲ ସେ          ଧୃତରାଷ୍ଟ୍ର ବଳା
ରାଗେ ବୋଇଲ କବଚ          ଏଥୁ ବେଗେ ପଳା ।

ଦୁଃଶାସନକୁ ବୋଇଲ          ନିଅ ବାଳ ଧରି
ଦୁରେ ଛାଡ଼ ଅସ ଗଲେ          ଗଲଥା ତୁ ମାର ।

ଶୁଣିଣ ଦୁଃଶାସନ ଯେ          କେଶ ଧରି ବେଗେ
ଯୋଜନ ଅନ୍ତରେ ନେଇ          ଛାଡ଼ ଅସେ ରାଗେ ।

ସେ ଲାଗି କବଚ ମନେ          ମହାକୋଧ କଲ
ଅଖଡ଼ାଶାଳ୍ପି ପଛୀକ          ଛଡ଼ ବାହିଗଲ ।

ଅଖଡ଼ାକୁ ଅନାଇ ସେ ଅଖଡ଼ାରେ ଥାଇ
ଯୋଜନ ଅନ୍ତରେ ଥାଇ ସାଧନ କରଇ ।

ଦେଖ ହୋ ମହିମା ତାର ପ୍ରତାପୀ ଶବର
ଯୋଜନ ଅନ୍ତରେ ରହ ସାଧେ ସବୁ ଶର ।

ଯେମନ୍ତ ପାଦଗଡ ସେ କରନ୍ତି କୌରବେ
ସେହି ପ୍ରକାରେ ସାଧଇ ଧାମଇଁ ସେ ସ୍ତବେ ।

ସ୍ନେହପର ଗୃହୀଁ ଗୃହୀଁ ସାଧଇ ସେ ବିଦ୍ୟା
ସମସ୍ତ ଶିକ୍ଷିଣ ସେହୁ ହେଲା ମହାଯୋଦ୍ଧା ।

ତାସ ନାମରେ ସ୍ୱରଯା ଅଛଇ ତା ଘରେ
କପତକୁ ବୋଇଲା ସେ ବିମୁଖ ମନରେ ।

ଅମ୍ଭେ ବନଚର ବନ- ଜୀବ ଯେ ଆହାର
ମୃଗୟା ନ ଯାଇ ବାଇ ପ୍ରାୟ ଧାଇଁ ମର ।

ଜାସ୍ପଶବର ବୋଇଲା ଶୁଣ ରେ ସଙ୍ଗାତ
କାଳେ ଜାଣିବୁ ନା ତୁହି ଏଥିର ତଦନ୍ତ ।

ସ୍ୱବଯା ବୋଇଲା କର୍ପୀ ବୋଲ୍ ବାଇ ପର
କେମନ୍ତ ପ୍ରକୃତ ଏହା ବୁଝି ତ ନ ପାର ।

ଅକାରଣେ ପାମର ତୁ ଧାଇଁ କର୍ପୀ ମରୁ
ଏହା ସାଧୁଅଛୁ କହ କେ ତୋହର ଗୁରୁ ?

ଗୁରୁ ନ ଥିଲେ ତ ବିଦ୍ୟା ନୁହଇ ପ୍ରାପତ
ମୂର୍ଖ ପାମର ରେ ବନ- ଚର ବନେ ଜାତ ।

ସ୍ୱରପା ବାକ୍ୟ ପରମ ହିତ ସେ ମଣିଲା
ମାଟିରେ ଦ୍ରୋଣେକ ଗଢ଼ି କପତ ଥାପିଲା ।

ଶିରରେ ଖଞ୍ଜିଲ ବୃନ୍ତ ମୃଗର ଶୃମର
ଖଞ୍ଜିଲେକ ଗୁଞ୍ଜମାଳ ଲଲାଟେ ତାହାର ।

ସ୍ଫଟିକ ବେଳ ଚକ୍ଷୁରେ ନେଇଣ ଖଞ୍ଜିଲ
ସ୍ୱଞ୍ଚା ଗରଗଡ଼ମାଳ ହୃଦେ ଲମ୍ବାଇଲ ।

କୋଇଲ ସୂତାରେ ଅଙ୍ଗ ଆବରଣ କଲ
କୁମ୍ଭଦ ମାଳ ଉତ୍ତରୀ କଣ୍ଠେ ଲମ୍ବାଇଲ ।

ଚନ୍ଦନ ଚେଡା ଝଲକ ରଚ ଭଲେ ଉରେ
ଧାମଣା କାଠର ଧନୁ ଦେଲ ବାମ କରେ ।

ଡାହାଣ ଭୁଜର ଯେଉଁ ତର୍ଜ୍ଜନୀ ଅଙ୍ଗୁଳି
ଅଖଡ଼ାଶାଳକୁ ତାହା କରାଇଛ ଦୃଷ୍ଟି ।

ମୁଣ୍ଡିବା ଦ୍ରୋଣଚରଣ- ଅମ୍ବୁଜକୁ ସେବି
ସାଧିଲ ସମସ୍ତ ବିଦ୍ୟା କସତ ଯେ ଭାବ ।

ନମସ୍ତେ ହେ ଦୀନବନ୍ଧୁ ଦେବ ଦଇତାରି
ମୂର୍ଖ ସାରଳା ଦାସକୁ ଭବୁଁ କର ପାର ।

# କର୍ଣ୍ଣାର୍ଜୁନଙ୍କ ଯୁଦ୍ଧ ଓ ଅର୍ଜୁନଙ୍କର ବ୍ରହ୍ମାଣ୍ଡ ଦର୍ଶନ

ଁ ଶୂଦ୍ରମୁନି ସାରଳା ଦାସ

କହନ୍ତି ଅଗସ୍ତି ମୁନି | ଶୁଣ ହେ ରାଜନ
ଏଥୁ ଅନ୍ତେ ଯାହା ହେଲା | ସମର ବିଧାନ ।
ରଜନୀ ହୁଅନ୍ତେ ଶେଷ | ଉଦୟ ଭାସ୍କର
ଅସ୍ତ୍ର ଘେନି ବାହାରିଲେ | କଉରବ ବୀର ।
ସଜ ହୁଅ ସଜ ହୁଅ | ପଡ଼ିଲା ଚହଳ
ସଜ ହେଲେ ରଥଗଜ | ଚତୁରଙ୍ଗ ବଳ ।
ସାତ ଖର୍ବ ଗଜ ଛନି | ଅର୍ବୁଦେକ ରଥ
ଏଗାର କ୍ଷଉଣୀ ଅଶ୍ୱ | ଅବେର୍ଣ୍ଣ ସହିତ ।
ବୀର ତୁର କାହାଳୀ ଯେ | ନାଗରା ବଜାଇ
ଚଞ୍ଚଳ ପତାକାମାନ | ଆକାଶେ ଉଡ଼ଇ ।
ଲକ୍ଷେକ ନବ ଯୁବତୀ | ଘେନି ଅର୍ଘ୍ୟସ୍ଥାଳୀ
ଦୁର୍ଯ୍ୟୋଧନ ବନ୍ଦାଇଲେ | ଦେଇ ହୁଳହୁଳି ।
ଦ୍ୱିଜମାନେ ମିଳି ତହିଁ | କଲେ ବେଦଧ୍ୱନି
କଲ୍ୟାଣ ବାଞ୍ଛା କରନ୍ତି | ସର୍ବ ସିଦ୍ଧ ମୁନି ।
ଦିବ୍ୟ ବେଶ ସାଜ ବଳେ | ସୂର୍ଯ୍ୟଙ୍କ କୁମର
ମତ୍ତହସ୍ତୀ ଟାଣି ଜିଣି | ଦିଶନ୍ତି ସୁନ୍ଦର ।
ଶଲ୍ୟଙ୍କୁ ବୋଇଲେ ମୋର | ରଥ ଚଳଦିଅ
ଯହିଁ ନନ୍ଦଘୋଷ ତାହା | ଆଗରେ ରଖାଅ ।
ପ୍ରଥମେ କୃଷ୍ଣ ଅର୍ଜୁନ | ସମରେ ମାରିବି
ପରେ ଦୁଇ ମାଦ୍ରୀସୁତ | ଭୀମକୁ ଦେଖିବି ।

ଦ୍ରୁଣୀସ୍ୱରେ ଯୁଧିଷ୍ଠିର — ଶିଖଣ୍ଡୀ ସହିତ
ମାରିଲେ ସ୍ୱେସେଇ ମଲ୍ଲ — ହୋଇବ ମୂର୍ଦ୍ଧ ତ ।
ଶଲ୍ୟ ବୋଇଲେ କାଳଙ୍କ — ତୋର ଏ ସ୍ୱଭାବ
ମରିବା ପର୍ଯ୍ୟନ୍ତେ ତୁହି — ନ ଛାଡ଼ିବୁ ଗର୍ବ ।
କାଳସର୍ପ ସମ ଅଟେ — ବୀର ଅର୍ଜୁନ
ତାହାର ଅଗରେ ତୁହି — ମଣ୍ଡୂକ ସମାନ ।
ଯେତେବେଳେ ତୁ ଦେଖିବୁ — ପାର୍ଥ ନାରାୟଣ
ପଳାଇବୁ ସିଂହଭୟେ — ହସ୍ତୀର ସମାନ ।
ଶୁଣି କର୍ଣ୍ଣ ବୋଇଲେ ହେ — ଶୁଣ ଶଲ୍ୟବୀର
ଦେଖିବ କ୍ଷତ୍ରିୟପଣ — କେମନ୍ତ ମୋହର ।
ପାଣ୍ଡବଙ୍କ ସୈନ୍ୟ ଅଂଶ — ନ ରଖିବ ଏକ
ରଥରେ ବସି ସକଳ — କଥା ମୋର ଦେଖ ।
କେବଳ ସଖା ହୋଇଣ — ରଥ ଗୃହଳଦେବ
ପାଣ୍ଡବଙ୍କୁ କେଉଁ ରୂପେ — ରଖିବେ ମାଧବ ।
ତାହା ଶୁଣି ଶଲ୍ୟବୀର — ନ ଦେଇ ଉତ୍ତର
କରିଲଇ କର୍ଣ୍ଣ ବୃଥା — କରଇ ଗୃତର ।
ସାରଥି ମାନଙ୍କ ତାର — କି ବଳ ଅଛଇ
ତେଣୁ କାହାରିଲେ ରଥ — ମଣ୍ଡିବାର ପାଇଁ ।
କର୍ଣ୍ଣ ରଥ ମଣ୍ଡାଇଲେ — କରିଣ ଯତନ
ଦାଉ ଦାଉ ଦଶେ ଲାଗି — ସୂର୍ଯ୍ୟଙ୍କ କିରଣ ।
ଦ୍ୱିଜମାନେ ମିଳି ବେଦ — କରିଲେ ପଠନ
ଶୁଭ ଅନୁକୂଳେ କର୍ଣ୍ଣ — ଚଳିଲେ ବହନ ।
ପ୍ରାତଃକାଳେ ରଣକ୍ଷେତ୍ରେ — ହୋଇଲେ ପ୍ରବେଶ
ସୈନ୍ୟ ଘେନି ବାହାରିଲେ — କୌରବ ନରେଶ ।

ପୂର୍ବ ଦିଗରେ ବିକାଶ  ହୋଇଲେ ତପନ
ନନ୍ଦଘୋଷେ ବିଜେ କଲେ  ବୀର ଅରଜୁନ ।
ସାରଥି ହୋଇ ଶ୍ରୀକୃଷ୍ଣ  କଲେ ଶଙ୍ଖଧ୍ୱନି
ସେହି ଦିନ ଶୁଦ୍ଧି ସ୍ନାନ  କଲେ ଯାଜ୍ଞସେନୀ ।
ଅଗ୍ନି ଭିତରେ ପଶିଣ  ଶରୀର ପଖାଳି
ବାହାର ହୋଇଲେ କରେ  ଘେନି ଅର୍ଘ୍ୟସ୍ଥାଳୀ ।
ଶ୍ରୀବାସୁଦେବଙ୍କ ଆଗେ  ଅର୍ଘ୍ୟ ଦେଲେ ନେଇ
ଅଗ୍ରଜ ସହିତ ତାହା  ନେଇ ଯଦୁସାଇଁ ।
ବୋଇଲେ ଭୀମକୁ ଦିଅ  ଆନେ କିସ କାର୍ଯ୍ୟ
ଦୁଃଶାସନକୁ ନିଶ୍ଚୟ  ମାରିବେ ସେ ଆଜ ।
ତୁମ୍ଭର ପ୍ରତିଜ୍ଞା ଯାହା  କରିବେ ପାଳନ
ମାନ ଉଦ୍ଧାରିବେ ନିଶ୍ଚେ  ବୀର ଭୀମସେନ ।
ତାହା ଶୁଣି ଯାଜ୍ଞସେନୀ  କହିଲେ ଉତ୍ତର
ଆହେ ଇଚ୍ଛାମୟ ହରି  ଯେ ଇଚ୍ଛା ତୁମ୍ଭର ।
ଏ ଭବସାଗରେ ପ୍ରଭୁ  ରଖାଅ କୀରତି
ମୁଁ ତୁମ୍ଭର ଦାସୀ ଅଟେ  ଅହେ ରମାପତି ।
ଅସୀମ ବୀରତ୍ୱପଣ  ଅଛି ତୁମ୍ଭର
ତୁମ୍ଭେ ଏ ଦୁଃଖସାଗରୁ  ମୋତେ ପାରିକର ।
ଭୀମ ବୋଇଲେ ଦୁଃଶାର  ଉପାଡ଼ିବି ଭୁଜ
ତା ନୋହିଲେଁ ବିଷ ଖାଇ  ମରିବି ମୁଁ ଆଜ ।
ଆନ କଥାରେ ମୋହର  ପ୍ରୟୋଜନ ନାହିଁ
କିପରି ମରିବ ଦୁଃଶା  ଏହାହିଁ ଭାବଇଁ ।
ଦ୍ରୌପଦୀ ବୋଇଲେ ଆଜ  ଦୁଃଶା ଯେ ନ ମଲେ
ନିଶ୍ଚୟ ମରିବି ମୁହିଁ  ଜାଣ ଏହା ଭଲେ ।

ଏହୁ ଶରୀରେ ମୋହର    ପ୍ରୟୋଜନ ନାସ
ବନ୍ଧୁ ଦନୁ ତୁମ୍ଭଙ୍କୁ ମୁଁ    ଜାଣ ଯେଣୁ ଅଶ ।
ଯାଅ ଯାଅ ତୁମ୍ଭଙ୍କୁ ଯେ    ଧର୍ମ ହେଉ ସାହା
ଯେତେକ ଦୁଃଶାର ଉପାଡ଼    ଅଛି ଦୁର୍ବାଧା ।
ଭୀମ ବୋଲେ ସପ୍ତଦଶ    ଦିନ ହେଲା ରଣ
ଅଜ ଅବଶ୍ୟ ଦୁଃଶାର    ଘେନିବ ପରାଣ ।
ଯେତେବେଳେ ସହଦେବ    ଆସିବ ଝଟି
ବସିଲ ସ୍ଥାନରୁ ତୁମ୍ଭେ    ବେଗେ ଯିବ ଉଠି ।
ତୁମ୍ଭର ବଚନ ଶୁଣି    ଅଜ ଫଳୁ ମୋତେ
ଏହା କହୁ ଅର୍ଘ୍ୟ ଘେନି    ବସିଲେ ସେ ରଥେ ।
କୁମ୍ଭ କୃଷ୍ଣ ଦ୍ୱିତୀୟା ଯେ    ଅଟେ ଚନ୍ଦ୍ରବାର
ଉତ୍ତର ଫାଲ୍‌ଗୁନୀ ଋକ୍ଷ    ଭୋଗ ସେ ଦିନର ।
ବୃଦ୍ଧି ନାମରେ କରଣ    ଅର୍ଦ୍ଧଗଣ୍ଡ ଯୋଗ
କୁମ୍ଭ ସଙ୍କ୍ରାନ୍ତିରୁ ସେ    ଏକ ଦିନ ଭୋଗ ।
ଉଦୟଗିରିଙ୍କ ବନ    ଉଦେ ମାର୍ତ୍ତଣ୍ଡ
ତୈତିଳ ଯୋଗ କୁମ୍ଭ    ଲଗ୍ନ ଗୃହଦଣ୍ଡ ।
ଏ ଗୃହଦଣ୍ଡ ମଧ୍ୟରେ    ପ୍ରବେଶ କରନ୍ତି
ଛ ଦଣ୍ଡ କାଳବେଳାରେ    କର୍ଣ୍ଣ ତାଙ୍କୁ ଭେଟି ।
କର୍ଣ୍ଣ ପାର୍ଥ ରଥ ଯହୁଁ    ହେଲା ଭେଟାଭେଟି
କର୍ଣ୍ଣକୁ ଦେଖି କ୍ରୋଧରେ    ଜଳିଲେ କିରୀଟୀ ।
ଶତାଶୋଳ ବଳ ଧନୁ    କର୍ଣ୍ଣଙ୍କର କରେ
ସହସ୍ର ନାରାଚ ଯୋଖି    ବନ୍ଧିଲେ ସେ ଶରେ ।
ତାହା ଦେଖି ଅର୍ଜ୍ଜୁନ    କରି କୋପଦୃଷ୍ଟି
ବାବନ ଶରରେ ସବୁ    ପକାଇଲେ କାଟି ।

ଅସ୍ତ୍ର ବ୍ୟର୍ଥ ହେବା ଦେଖି ଆଦିତ୍ୟନନ୍ଦନ
ବୋଇଲେ ଅରେ ଅର୍ଜୁନ ଶୁଣ ମୋ ବଚନ ।
ବାଳକ ଗୁଡ଼ାଏ ମାରି ହୋଇ କରି ଦୋଷୀ
ବଡ଼ବଡ଼ ସମରରେ ମୁଁ ବଡ଼ ସାହସୀ ।
ପାର୍ଥ ବୋଇଲେ ତୁମ୍ଭେ ତ ବଡ଼ ପୁଣ୍ୟବନ୍ତ
ଅଧର୍ମେ ଶକଟବ୍ୟୂହ କରିଲ କେମନ୍ତ ?
ଚଉଦ ବର୍ଷର ମୋର ଅଭିମନ୍ୟୁ ପୁତ
ତୁମ୍ଭେ ସପ୍ତ କରିଲ ତାହାକୁ ନହତ ।
ଧୃତରାଷ୍ଟ୍ର ବଦୁର ଯେ ପଣ୍ଡୁ ତିନିଭାଇ
ଏକ ପିଅରଙ୍କୁ ଆନ ଏହାଙ୍କର ନାହିଁ ।
ଭିଲାଭିଲ ନୁହନ୍ତି ସେ ଏକ ଅସ୍ଥିରେ
ତୁମ୍ଭ କୁଟ କପଟରେ ହେଲେ ଏତେ ସରି ।
ଦୁଇ କୁଳେ ଲଗାଇଲ ତୁମ୍ଭେ ସିନା ବାଦ
ତୁମ୍ଭର ପାଇଁ ଘଟିଲା ଆସି ଏ ପ୍ରମାଦ ।
ହେ କର୍ଣ୍ଣ ଉଭୟ କୁଳ ତୁମ୍ଭେ ଲଢ଼ାଇଲ
ଏବେ ତ କୁରୁକୁଳକୁ ସମୂଳେ ମାଇଲ ।
ତାହା ଶୁଣି କହୁଛନ୍ତି କର୍ଣ୍ଣ ମହାବୀର
ଏବେ ଶୁଣ ରେ ଅର୍ଜୁନ ମୋ କହବା ଗାର ।
ଆଜି ମୋହର ସମର ଦେଖିବୁ ସାକ୍ଷାତେ
ପଣ୍ଡୁକୁଳକୁ କେମନ୍ତେ ରଖିବେ ଅଚ୍ୟୁତେ ।
ପଶୁରୁ ପଶୁରୁ ସେହି ମହାବଳୀ କର୍ଣ୍ଣ
ସୂର୍ଯ୍ୟ ସମ ଶତେ ଶର ବନ୍ଧିଲା ବହନ ।
ଆକାଶ କମ୍ପିଲା ସେହି ନାରାଚ ଅସନ୍ତେ
ଉପରେ ଶୁଭଇ ଯେସନ୍ତେ ପଡ଼ଇ ନର୍ଘାତେ ।

ବାରୁଣୀ ନାରାଚ ଧରି — ବନ୍ଧିଲେକ ପାର୍ଥ
କର୍ଣ୍ଣର ସେ ଶତେ ଶର — ହୋଇଗଲା ବ୍ୟର୍ଥ ।
ପୁଣି ପାର୍ଥ କୋପେ ଅସ୍ତ୍ର — କରନ୍ତେ ଅଘାତ
ଶଏ ଭେଦ୍ଦା ଘୂର୍ଣ୍ଣିଗଲା — କର୍ଣ୍ଣଙ୍କର ରଥ ।
ସାଧୁ ସାଧୁ ଶୁଣିଲେକ — ଆକାଶରୁ ବାଣୀ
ଦେବସଭାରେ ପ୍ରଶଂସା — କଲେ ବଜ୍ରପାଣି ।
ଯଲକ ମାନବକେ ଶଲ୍ୟ — ରଥରୁ ଅଣନ୍ତ
ଧନ୍ୟ ଧନ୍ୟ ମାମୁ ବୋଲି — କର୍ଣ୍ଣ ପ୍ରଶଂସନ୍ତ ।
ପୁଣି ବଜ୍ରାବଳ ଶର — ମାଇଲେ କଣ୍ଠୀ
କର୍ଣ୍ଣ ରଥ ଶଏ ଭେଦ୍ଦା — ପୁଣି ଗଲା ହଟି ।
ଶଏ ନାରାଚ ମାରନ୍ତେ — କୋପେ ସୂର୍ଯ୍ୟସୁତ
ଦଶ ବାଣରେ କଣ୍ଠୀ — ତାହା କଲେ ହତ ।
ମେଘା ଶର ପ୍ରହାରିଲେ — ବୀର ଧନଞ୍ଜୟ
ପବନା ଶରେ କାଟିଲେ — ଆଦିତ୍ୟତନୟ ।
ପନ୍ନଗ ଶରକୁ କର୍ଣ୍ଣ — ବନ୍ଧିଲେ ପାଳଟି
ଗରୁଡ଼ା ଶରେ ତାହାକୁ — ଛେଦିଲେ କଣ୍ଠୀ ।
କୋପେ ପାର୍ଥ ଶଏ ଶର — ପୁଣି ପ୍ରହାରନ୍ତେ
ଏକ ନାରାଚକେ କର୍ଣ୍ଣ — କାଟି ପକାଇଲେ ।
ସହସ୍ରେ ନାରାଚୁ କର୍ଣ୍ଣ — ବନ୍ଧିଲେକ ପୁଣି
ପଞ୍ଚବିଂଶ ବାଣେ ପାର୍ଥ — ପକାଇଲେ ହାଣି ।
ପୁଣି ଶଏ ଶର ପାର୍ଥ — କରନ୍ତେ ଅଘାତ
ହେଳେ ଛେଦ ପକାଇଲେ — ସୂର୍ଯ୍ୟଙ୍କର ସୁତ ।
ପୁଣି ଶକଢ ମାଇଲେ — କର୍ଣ୍ଣ ମହାମତ
କାକଲ୍ଲ ଶରେ କାଟିଲେ — ପଣ୍ଡୁଙ୍କ ସନ୍ତତ ।

ବାୟୁବ୍ୟ ଶର ମାରିଲେ ବୀରବର ପାର୍ଥ
ଶଏ ହେଡ଼ା ଘୁଞ୍ଚିଗଲା କର୍ଣ୍ଣଙ୍କର ରଥ ।
ଗୃହ୍ନୁଁ ଗୃହ୍ନୁଁ ଶଲ୍ୟ ରଥ ଅଣିଲେ ଉଠାଇ
ପୁଣି ନନ୍ଦିଘୋଷ ଅଗେ ରଖିଲେକ ନେଇ
ଏହିରୂପରେ ସମର କରନ୍ତେ କସହୀ
ବାର ବାର କର୍ଣ୍ଣରଥ ଯାଉଥାଏ ହଟି ।
ତାହା ଦେଖି କୋପ କରି ସୂର୍ଯ୍ୟଙ୍କ ନନ୍ଦନ
ବଜ୍ରାବଳି ମହାଶର କଲେ ଅବାହନ ।
ସାୟକେ ବସାଇ ତାକୁ ଯହୁଁ ଦେଲେ ଛାଡ଼ି
ପବନଗଣ୍ଡରେ ଶର ଅସିଲାକ ମାଡ଼ି ।
ନବାରି ପାରିଲେ ନାହିଁ ତାକୁ ବୀର ପାର୍ଥ
ସାତ ହେଡ଼ା ଘୁଞ୍ଚିଗଲା ନନ୍ଦିଘୋଷ ରଥ ।
ଧନ୍ୟ ଧନ୍ୟ ବୋଲି ଶୁଭେ ଅକାଶରୁ ବାଣୀ
ଧନ୍ୟ କର୍ଣ୍ଣ ବୋଲି ଡାକ ଦେଲେ ଚକ୍ରପାଣି
ପୁଣି ପାଞ୍ଚଜନ୍ୟ ଧରି ବାଇଲେ ପ୍ରବଳ
ଶଙ୍ଖ କହେ ଧନ୍ୟ କର୍ଣ୍ଣ ଧନ୍ୟ ତୁମ୍ଭ ବଳ ।
ଶ୍ରୀକୃଷ୍ଣମୁଖରୁ ଶୁଣି ପ୍ରଶଂସା ବଚନ
ଧନୁଶର ତଳେ ଥୋଇ ଉଭା ଅରଜୁନ ।
ଅସ୍ତ୍ରପ୍ରୟୋଗ ନ ଦେଖି ଦେବ ଜଗନ୍ନାଥ
କର୍ଣ୍ଣ ଦର୍ପ ଦେଖି ସ୍ଥିର ହୋଇଲୁ କି ପାର୍ଥ
ତୋର ଏ ନ୍ୟୁନତା ଦେଖି ଏକ୍ଷଣି ରାଧେୟ
ପାଣ୍ଡବଙ୍କ ସୈନ୍ୟବଳ କରିଦେବ କ୍ଷୟ ।
ଅର୍ଜୁନ ବୋଇଲେ ଦେବ ଶୁଣ ମୋ କଥାକୁ
ସାତ ଥର ଘୁଞ୍ଚାଇଲି କର୍ଣ୍ଣର ରଥକୁ ।

ପ୍ରତ୍ୟେକ ଥରରେ ଛୁଟେ    ଶଏ ଦେଢ଼ାପାଏ
ମୋତେ ପ୍ରଶଂସା ନୋହିଲ    ସେଥିକି ଚିହ୍ନଏ ।
ସାତ ଦେଢ଼ା ମାତ୍ର ଥରେ    ଘୁଞ୍ଚିଲ ମୋରଥ
ଏଥିକି ଏତେ ପ୍ରଶଂସା    କଲ ଜଗନ୍ନାଥ ।
ତାହାର ପ୍ରଶଂସା ଶୁଣି    ମୁଁ ଦୁଃଖିତ ହୋଇ
ରହିଲଇଁ ସିନା ଧନୁ-    ଶର ତଳେ ଥୋଇ
କର୍ଣ୍ଣର ପ୍ରଶଂସା ଶୁଣି    କର୍ଣ୍ଣରେ ମୋହର
ପ୍ରାଣ ନ ଯାଇ ରହିଛି    ଯାହା ଚକ୍ରଧର ।
ଅର୍ଜୁନବଚନ ଶୁଣି    ବୋଲନ୍ତି ରମେଶ
ଦେବତାଙ୍କୁ କୋପ କରୁ    ନ ଜାଣି ବିଶେଷ ।
ମୋତେ ବୃଥା ଦୋଷ ଦେଇ    ମନେ କରୁ ତାପ
ମୋତେ ଅଗୋଚର ଅଛି    କର୍ଣ୍ଣ ବୀର ଦର୍ପ ।
ନ ଜାଣିବା ପଣେ ହିନା    ବୋଲୁ ଧନଞ୍ଜୟ
କର୍ଣ୍ଣର୍ ରଥ କେବଳ    ତୁଳା ଗଦା ପ୍ରାୟ ।
ମହାମନ୍ଦରକୁ ଜଣେ    ନନ୍ଦଘୋଷ କର
ତଉଦ ସହସ୍ର ବଳେ    ବସେ ହନୁ ବୀର ।
ଦେଖ ନନ୍ଦଘୋଷ ପୀଢ଼    କେମନ୍ତ ବୃହତ
ଶୃଙ୍ଗ ମେଘରହିଛନ୍ତି    ଯହିଁରେ ଏକାନ୍ତ ।
ରଥର ଦକ୍ଷିଣ କୋଣେ    ପୁଣି ଦେଖ ଯାଇ
ଈଶ୍ୱର କୁବେର ବେନି    ରହିଛନ୍ତି ତହିଁ ।
ନୈଋତ କୋଣକୁ ପୁଣି    ଦେଖ ରେ ଅର୍ଜୁନ
ସ୍ତମ୍ଭ ଭିତରେ ଅଛନ୍ତି    ଦେବତା ପବନ ।
ପଶ୍ଚିମ କୋଣକୁ ଦୃଷ୍ଟି    କର ରେ ବିଜୟ
ରଥ ସ୍ତମ୍ଭେ କରିଛନ୍ତି    ବରୁଣ ବିଜୟ ।

ସତ୍ୟ ଦ୍ୱାପର ତ୍ରେତୟା   ଯୁଗମାନ ମିଳି
ହୋଇଛନ୍ତି ନନ୍ଦଘୋଷ   ରଥର ଯୁଅଳି ।
ଉତ୍ତର ଦକ୍ଷିଣ ପୂର୍ବ   ପଶ୍ଚିମାଦି କୋଣ
ହୋଇଛନ୍ତି ଅଶ୍ବ ଯୋଗ୍ୟ   ଦଉଡ଼ି ତୁ ଜାଣ ।
ଶଙ୍ଖ ପଦ୍ମ ମହାପଦ୍ମ   କର୍କୋଟ ତକ୍ଷକ
ବାନ୍ଧଣ ଦଉଡ଼ି ଏହୁ   ହୋଇଛନ୍ତି ଦେଖ ।
ପ୍ରଳୟତାରଣକାରୀ   ଏହୁ ଶ୍ୱେତ ଘୋଡ଼ା
ଏ ରଥକୁ ଘୁଞ୍ଚାଇଲା   କଣ୍ଠ ସାତ ବେଢ଼ା ।
ଏଥକୁ କଣ୍ଠ କପାଇଁ   ଧନ୍ୟ ନ ହୋଇବ
ବୋଇଲ୍ ଶମ୍ଭୁକୁ ଧନ୍ୟ   କଲ ହେ ମାଧବ ।
ପୁଣିହିଁ ବୋଲୁଛୁ ଦେହେ   ପ୍ରାଣ କମ୍ପି ଅଛୁ
ପାର୍ଥ ତୋ ମନେ ବିଶେଷ   ଭ୍ରମ ଯେ ହୋଇଛି ।
ଦେଖ ଦେଖ କହୁ କୃଷ୍ଣ   ବିସ୍ତାରିଲେ ପାଟି
ସପ୍ତ ବ୍ରହ୍ମାଣ୍ଡ ରହୁଛି   ଦେଖିଲେ କିରୀଟୀ ।
କାହିଁ ନଦୀ କାହିଁ ଗିରି   କାହିଁ ବନ ଘୋର
ଏ ସକଳ ଦେଖି ପାର୍ଥ   ହୋଇଲେ କାତର ।
ହିମାଦ୍ରିର ସପ୍ତ ଶୃଙ୍ଗ   ମେରୁ ଯେ ମନ୍ଦର
ଦେଖି ପାର୍ଥ ବିସ୍ମରନ୍ତି   ରଥ କେତେ ଭୁର ।
ପୁଣି ଦେଖିଲେ ଅର୍ଜ୍ଜୁନ   ସପ୍ତଦ୍ୱୀପା ମହୀ
ସାତ ସମୁଦ୍ର ଘେରିଛି   ସାତ ଥର ହୋଇ ।
କାହିଁ ରାମାୟଣ ଯୁଦ୍ଧ   ହୁଏ ଭୟଙ୍କର
ରାମଙ୍କ ସଙ୍ଗେ ରାବଣ   କରୁଛି ସମର ।
କାହିଁ ଦୁର୍ଗା ସହିତରେ   ମହିଷ କୌଣପ
ସମର କରଇ ସୈନ୍ୟ   ଘେନିଣ ଅମାପ ।

କାହିଁ ଭାରତ ସମର ଅର୍ଜୁନ ଦେଖନ୍ତି
କେତେ କେତେ ମହାରଥୀ ମରି ପଡ଼ନ୍ତି ।
କାହିଁ ଦଶ ଅବତାର ମୂର୍ତ୍ତି ନାରାୟଣ
କୃଷ୍ଣଙ୍କ ଗର୍ଭେ ରହିଛି ସକଳ ପୂର୍ଣ୍ଣ ।
ଏ ସକଳ ଦେଖି ପାର୍ଥ ରଥରୁ ଓହ୍ଲାଇ
ଶ୍ରୀକୃଷ୍ଣଙ୍କ ପାଦତଳେ ପଡ଼ିଲେକ ଯାଇ ।
ଉଠି ବୋଇଲେ ହେ ନାଥ ତୁମ୍ଭେ ମାୟାଧର
ମୁଁ କାହୁଁ ଜାଣିବ ସାର ମାନବ ମାତର ।
ଏବେ ମୁଁ ଜାଣିଲି ତୁମ୍ଭ ଦୟା ମୋହଠାରେ
ସଦା ଥାଏ, କହି ଧନୁ ଧଇଲେ ହସ୍ତରେ ।
ଜୟ କଳାକରମୁଖ ଶରଣପଞ୍ଜର
ଜୟ ହେ ନୀଳାଦ୍ରି ସିଂହ ଦୁଃଖିଦୁଃଖହର ।
ଅହେ ପ୍ରଭୁ ଦୟାମୟ ଶଙ୍ଖଚକ୍ରହସ୍ତ
ତୁରିତେ ଛେଦନ କର ମୋହର ଦୁରିତ ।
ଏ ଭବସାଗରେ ପଡ଼ି କଷ୍ଟେ ଗଲି ବୁଡ଼ି
ତୁମ୍ଭ ନାମ ନ ଭଜିଲି ଦନେ ହେଲେ ଥରେ ।
ସର୍ବଦା ପାପପଥରେ ଦିନ ଗଲା ମୋର
କେମନ୍ତେ ତରିବି ଅଜ୍ଞ ଏ ଭବସାଗର ?
ତୁମ୍ଭର ନାମ କେବଳ ସେ ପଥକୁ ହେଲା
ମୋର ବାଧା ବିଘ୍ନ ଯାହା ଛେଦ କରାଗଲା ।
ତୁମ୍ଭ ନାମ ଜପିବାକୁ ଅହର୍ନିଶି ବସି
ସାରଳା ଦାସ ସର୍ବଦା ହୁଏ ଅଭିଳାଷୀ ।

# ଶିବଧନୁର୍ଭଙ୍ଗ

## ୪ ବଳରାମ ଦାସ

ଏହି ରାଜା ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ (୧୪୯୭—୧୫୩୨) ସମୟରେ ଜୀବିତ ଥିଲେ । ଏହାଙ୍କର ପିତାଙ୍କ ନାମ ସୋମନାଥ ମହାପାତ୍ର ଓ ମାତାଙ୍କର ନାମ ମନୋମାୟା ଥିବାର କବି ସ୍ୱରଚିତ ଗ୍ରନ୍ଥମାନଙ୍କରେ ଲେଖିଅଛନ୍ତି । ସୋମନାଥ ମହାପାତ୍ର ରାଜାଙ୍କ ଠାରେ କରଣ ଥିଲେ; କିନ୍ତୁ ବଳରାମ ବୈଷ୍ଣବମତାବଲମ୍ବୀ ହେବାରୁ "ଦାସ" ଉପାଧି ଧାରଣ କରିଥିଲେ । ତାହାଙ୍କ-ଠାରେ ପ୍ରଗାଢ଼ ଭଗବତ୍ ପ୍ରେମ ଦେଖି ଲୋକମାନେ ତାଙ୍କୁ "ମତ୍ତ ବଳରାମ ଦାସ" ବୋଲି କହୁଥିଲେ । ଏହି ମହାତ୍ମା ଅନ୍ୟୂନ ୨୫ ଖଣ୍ଡ ଧର୍ମଗ୍ରନ୍ଥ ରଚନା କରିଅଛନ୍ତି । ଏହାଙ୍କ ବିରଚିତ "କମଳଲୋଚନ ଚଉତିଶା" ଉତ୍କଳରେ ସୁପରିଚିତ । ସାରଳା ଦାସଙ୍କ ମହାଭାରତ ଓ ଜଗନ୍ନାଥ ଦାସଙ୍କ ଭାଗବତ ପରି ବଳରାମ ଦାସଙ୍କ "ଜଗମୋହନ" ବା ଦାଣ୍ଡି ରାମାୟଣ ସର୍ବଜନସମାଦୃତ ହୋଇଅଛି ।

୨

| | |
|---|---|
| ଏଥୁ ଅନନ୍ତରେ ଭୂମେ | ଶୁଣ ଶାକମ୍ଭରୀ |
| ରାମ ବନେ ବଳେ ଯେ | ଲକ୍ଷ୍ମଣ ଧନୁର୍ଧର । |

ମଞ୍ଜୁଷା ଭିତରରୁ ଶ୍ରୀରାମ ଦେଲେ ଦୃଷ୍ଟି
ସିଂହ ଦେଖଇ ଯେସନ୍ତେ କନ୍ଦରେ ମତ୍ତହସ୍ତୀ ।
ଧନୁ ଦେଖିଣ ଶ୍ରୀରାମ ହେଲେ ତୋଷଚିତ୍ତ
ଜନକଙ୍କୁ ଚାହିଁଣ ବୋଲନ୍ତି ରଘୁନାଥ ।
ହେ ମହାମୁନି ହୋଇଲ ଯେବେ ସୁପ୍ରସନ୍ନ
ବାହାରକୁ କାଢ଼ି ଆଣିବଇଁ ଶରାସନ ।
ସଦାଶିବ କୋଦଣ୍ଡ ଛୁଇଁଲେ ପାପ ଯାଉ
ହରଷଚିତ୍ତରେ ମୁନି ଆଜ୍ଞା ମୋତେ ହେଉ ।
ଶ୍ରୀରାମଙ୍କ ବଚନେ ଯେ ବୋଲଇ ଜନକ
ଏ କଥାକୁ କେମନ୍ତ ତୁ ମଣୁ କଉଶିକ ?
ଅକଳ ବଳ ଧନୁ ବାହାରେ ଲୋଡ଼େ ଆଣି
ଏଥିର ସଂଶୟ ମୁନି ଅଛ ତୁମ୍ଭେ ଜାଣି ।
ବିଶ୍ୱାମିତ୍ର ବୋଇଲେ ମୁଁ କହୁବଇଁ କିସ
ପ୍ରତ୍ୟକ୍ଷରେ ତୁହି ଋଷି ଅଛୁ ଜନଦକ୍ଷ ।
ଏ ଯେବେ ଧନୁକୁ ଦେଖିବାକୁ କଲା ସଧ
ପାରିଲେ ସେ ଆଣୁ କି ନା ନ କର ବିରୋଧ ।
ଅସଂଖ୍ୟ ଏ କଥା ଗୋଟି ବୁଝିବା ନା ଦେଖି
ଆଣି ପାରିଲେଟି ସିନା ବଳବନ୍ତ ଲେଖି ।
ବୋଇଲି ଜନକ ବିଶ୍ୱାମିତ୍ର ମୁଖ ଚାହିଁ
ମହାଦେବ ଧନୁ ଯେ ଛୁଅନ୍ତା କେହୁ ନାହିଁ ।
ଅନେକ ଦେଶର ଏଥେ ରାଜାମାନେ ଛନ୍ତି
ତୋଳି ନ ପାରିଣ ଲଜ୍ଜା ପାଇଲେ ନୃପତି ।
ଏ ବାଳକ ପୁଅ ଧନୁ ଧରିବ କେମନ୍ତେ
ମାୟା କଲେ ପରଲୋକ ଜାଣିବା ନା ଏଥେ ।

ଜନକର ମୁଖରୁ     ଏସନ ବାଣୀ ଶୁଣି
ରାଜାମାନେ ତହିଁ ଯେ     ବୋଲନ୍ତି ଉଚ୍ଚ ବାଣୀ ।
ଭୋ ଜନକ କାହିଁ ତୁ ନ     ବୋଲୁ ଧନୁ ଆଣ
ଦେଖିବା ଏଥିର ବେଳେ     କେଡ଼େ ବଡ଼ପଣ ।
ଭରସା ନ ଥିଲେ କି     ପର୍ବତ ମୁଣ୍ଡେ ବହି
ପୁଣ ପୁଣ ସଭା ମଧ୍ୟେ     ଢୋଳବ ବୋଲଇ ।
ଆମ୍ଭମାନଙ୍କର ଭଙ୍ଗି     ଅସିବା ଦେଖିଲ
ଭରସା ନ ଥିଲେ କି     ମାନସ ବଳାଇଲ ।
ବୋଲ ତୁମ୍ଭେ ମୁନିବର     ଧନୁ ଯେବ ଅସୁ
ବାହାରକୁ ଆଣିଣ ଯେ     କୋଦଣ୍ଡ ଅମଣ୍ଡୁ ।
ସବୁ ନୃପଛଏ ଯହିଁ     ଦେଖନ୍ତୁ ସନମତ
ହସିଣ ବୋଇଲେ ସେ     ଜନକ ତପୋବନ୍ତ ।
ତୁ ବାବୁ ଶ୍ରୀରାମ ଅଟୁ     ଅଳପ ବୟସ
ଏ ଧନୁ ଧରିବାକୁ     ପ୍ରାକର୍ମ ତୋର କସ ।
ବଡ଼ ବଡ଼ ରାଜାମାନେ     ରହିଲେଣି ଫୁଟି
ତୁ କସ କରିବୁ ଯେ     କଅଁଳା ପୁଅ ଗୋଟି ।
ଏ ଧନୁର ଗୁଣ ଯେତେ     ଅଛଇ ନା ଜାଣ
ଛୁଇଁବା ମାତ୍ରକେ କ୍ଷତ୍ରୀ     ହୁଏ ହତ ପ୍ରାଣ ।
କାଳେ ତୁ ବୋଲିବୁ ବକ     ନ କହିଲେ ବୋଲି
ମୋହର ଯେ ଦୋଷ ନାହିଁ     ଆଗହୁଁ କହିଲି ।
ହସି କହି ଶ୍ରୀରାମ     କହନ୍ତି କର ଯୋଡ଼ି
ପାରିଲେ ସିନା ଆଣିବ     ଧନୁକୁ ଉଚ୍ଛୁଡ଼ି ।
ନୋହିଲେ ତା ପୁଣ ତୁମ୍ଭେ     ନେବ ବାହୁଡ଼ାଇ
ଅଷ୍ଟାଦଶ ମୁନି ହୋ     ପ୍ରସନ୍ନମୁଖ ହୋଇ ।

ଶ୍ରୀରାମର ଏସନ  ନିଷ୍ଠୁର ବାକ୍ୟ ଶୁଣି
ଜନକ ମନରେ  ବିଚାରନ୍ତି ପୁଣ ପୁଣି ।

ବିଶ୍ୱାମିତ୍ର ଏହାଙ୍କର  କହଇ ଗାରିମା
ଏହି କଥା ପୂର୍ବେ ମୋତେ  କହିଥିଲେ ବ୍ରହ୍ମା ।

ଏ ଧନୁକୁ ଯତନ  କରିଣ ଥୋଇଥିବୁ
ଜାନକୀର ସ୍ୱୟମ୍ବରେ  ହରିଙ୍କି ଦେଖିବୁ ।

ସେ କଥା ନିକଟ ଅବା  ହୋଇଲାକ ଆସି
ଏତେକ ବିଚାରି ମୁନି  କହିଲେକ ହସି ।

ପାରିଲେ ଆଣ ବାବୁ  କପାଳିଁ ଅଙ୍କ ମାଗୁ
ତୁ ବାହୁଡ଼ ପୁଅ ଧରୁ  କଥା ଛୋଟେ ଲଗୁ

ଜନକର ବଚନ  ଶୁଣିଣ ରଘୁସାଇଁ
ମଞ୍ଜୁଷା-ଦ୍ୱାରେ ବିଜମି  ଯାଇ ଉଭା ହୋଇ ।

ସ୍ୱର୍ଗରେ ଦେବତାଗଣ  ଅଛନ୍ତି ଅନାଇ
ରାଜାଗଣେ ସମସ୍ତେ  ଅଛନ୍ତି ଉଭା ହୋଇ

ହାବୁଡ଼ା ହାବୁଡ଼ି ହୋଇ  ସମସ୍ତେ ଦେଖନ୍ତି
ଏକଦୃଷ୍ଟି କରି ଯେ  ନୃପଢଏ ଅଛନ୍ତି ।

ମଞ୍ଜୁଷା ଭିତରେ ଯାଇ  ରାମଚନ୍ଦ୍ର ପଶି
ବାମ ଭୁଜେ ଧନୁକୁ ସେ  ଧଇଲେ ଆକର୍ଷି ।

ବାହାର ହୋଇଣ ଯେ  ଅଇଲେ ରଘୁନାଥ
ଦେଖିଲେ କୋଦଣ୍ଡ  ରାଜଗଣେ ବାମ ହସ୍ତ

ଆନନ୍ଦେ ଉତ୍ସୁକ ଯେ  ହୁଅନ୍ତି ନର ନାରୀ
ତୋଳିଣ ଧଇଲେ ଧନୁ  ଉଚ୍ଚେ ଧ୍ୱନି କରି ।

ଦେଖିଣ ଯେ ବିଶ୍ୱାମିତ୍ର ପୁଲକ ଶରୀର
ସାଧୁ ସାଧୁ ଶବଦ ଯେ ଶୁଭେ ନିରନ୍ତର ।

ଧନୁ ଧର ଶ୍ରୀରାମ ଅଛନ୍ତି ଉଭା ହୋଇ
ସୁରଗଣ ମଧ୍ୟେ ଯେହ୍ନେ ଇନ୍ଦ୍ର ଶୋଭା ପାଇ ।

ଦଶ ଦିଗକୁ ଚାହିଁଣ ବୋଲନ୍ତି ଲକ୍ଷ୍ମଣ
ଦିଗପାଳମାନେ ତୁମ୍ଭେ ସମସ୍ତେ ଯେ ଶୁଣ ।

ହେ ବାସୁକି ନାଗ ତୁ ଯେ ଅଟୁ ମହୀଧର
ଦେଖନ୍ତି ତ ଦିଗପାଳେ ହୋଇ ଅଗୁଁସାର ।

ଅହୋ ମହାକୂର୍ମ ବାରେ ସ୍ଥିର ହୋଇ ରହ
ବଳ ଲଗାଇଣ ତୁ ଧନୁର ଭାର ସହ ।

ଅଗୋ ବସୁମତି ! ତୁହ ସ୍ଥିର ହୋଇ ଅସି
ଅବଶ ହୋଇଲେ ନଷ୍ଟେ ହୋଇବୁଟି ଧ୍ୱଂସି ।

ବଳ ଲଗାଇଣ ତୁମ୍ଭେ ଧୀର ହୋଇ ଥିବ
ଈଶ୍ୱରଙ୍କ କୋଦଣ୍ଡ ଶ୍ରୀରାମ ଆମର୍ଷିବ ।

ଏସନକ ବୋଲିଣ ଶ୍ରୀରାମ ମୁଖ ଚାହିଁ
କରପଦ ଯୋଡ଼ି ପୁଣ ଲକ୍ଷ୍ମଣ ବୋଲଇ ।

ହେ ଦେବ ଶ୍ରୀରାମ ! ତୁମ୍ଭେ ମୋର ବୋଲ କର
ମଙ୍ଗଳ ନୁଆଇଁ ତୁମ୍ଭେ ଏ ଧନୁ ନ ଧର ।

ଏକଦୃଷ୍ଟି କରି ଚାହିଁଛନ୍ତି ନୃପବରେ
ପ୍ରଣାମ କରନ୍ତି ପରସ୍ପରେ ଦକ୍ଷିଣ ସଭାରେ ।

ନୃପଙ୍କ ସୂର୍ଯ୍ୟବଂଶ ଅମର ଅଟଇ
ତୋହର ସମ୍ଭାଳ ଏହୁ ସପ୍ତଦ୍ୱୀପା ମହୀ ।

ଶୁଣିଣ ଶ୍ରୀରାମଙ୍କର ପୁଲକଇ କାୟେ
କଣ୍ଠରୂପ ଧରଣ କଦମ୍ବ ଜନ୍ମ ହୋଏ ।

ବାମ କରେ କୋଦଣ୍ଡ ଧରଣ ଦାଶରଥି
ଗୁଣ ଦେବା ବୋଲଣ ଯେ କଣ୍ଠର କର୍ଷନ୍ତି ।

ଭୟ ପାଇ ବସୁମତୀ ବୋଲଇ ବଚନ
କାରେ ରକ୍ଷାକର ମୋତେ ଶ୍ରୀରଘୁନନ୍ଦନ ।

ଏ ଧନୁର ହୁଲ ଯଦ ଦେବୁ ମୋର ଉର୍ଦ୍ଧ୍ୱେ
ନଷ୍ଟହେବ ଜୀବନ ମୁଁ ଛାଡ଼ିବ ରଘୁସାଇଁ ।

ମେରୁଠାରୁ ଶତଗୁଣ ଏ କୋଦଣ୍ଡ ଗରୁ
ମୁହିଁ ଏହା ବହିବାକୁ ଅଟଇ ଯେ ଭୀରୁ ।

ରାମଚନ୍ଦ୍ର ଶୁଣି ପୃଥିବୀଙ୍କ ଦୟା କଲେ
ନିଜ ବାମ ପାଦେ ଅଗଭର କଢ଼ାଇଲେ ।

କନିଷ୍ଠ ଅଙ୍ଗୁଳି ନଖ କୋଣର ଉପରେ
ଧନୁହୁଳ ବସାଇଲେ ନେଇ ରଘୁବୀରେ ।

ଶରାସନ ମଣ୍ଡଳଙ୍କ ବାମ କରେ ଧରି
ଗୁଣ ଦେବା ନିମନ୍ତେ ସେ ଅଣିଲେ ଓଟାରି ।

ଉତ୍କଟ ଶବଦ ଯେ ଶୁଭିଲା କୋଦଣ୍ଡ
ଥରହର କମ୍ପଇ ମେଦିନୀ ନବ ଖଣ୍ଡ ।

ଗୁଣକୁ ଶ୍ରୀରାମ ଯେ ଦକ୍ଷିଣ କରେ ଧରି
ଓଟାରି ଧନୁର ହୁଲ ମଧ୍ୟେ ନେଇ ଭରି ।

ଯହୁଁ ଶରାସନ ନହୁଡ଼ାଇ ଦେଲେ ଗୁଣ
ଖଣ୍ଡିଙ୍ଗ ଶିର ନୁଆଇଁଲେ ସକଳ ସୁଜନ ।

ବୋଇଲେ କଣ୍ଟସ୍ଥ ଅଛି    ହର ବଳେ କଳ
ସମସ୍ତଙ୍କର ମନରୁ    ଭ୍ରାନ୍ତି ଫିଟିଗଲା ।

ଗୁଣ ଦେଇ ଧନୁକୁ    ଧଇଲେ ସଜ କରି
ସଭ୍ୟଜନ ମନେ ଜାତ    ଅନନ୍ଦଲହରୀ ।

ବାମ କରେ ଧରି ରାମ    ଗୁଣ ଟଙ୍କାରନ୍ତି
ଦେଖି ଜନକର    ଫିଟିଲାକ ମନଭ୍ରାନ୍ତି ।

ମନେ ବିଚାରିଲେ ଏହୁ    କଣ୍ଟେ ବାସୁଦେବ
ନୋହିଲେ ଏ ଧନୁ କେବା    ଅନେ ଅସମ୍ଭବ ?

ପ୍ରତ୍ୟକ୍ଷରେ ନାରାୟଣ    ହୋଇଅଛନ୍ତି ଜାତ
ଏଡ଼େ ବଡ଼ ଧନୁ କେବା    କରନ୍ତା ଅଯତ୍ନ ?

କଣ୍ଟେ ଏହୁ ଜାନକୀର    ହେବେ ନିଜ କାନ୍ତ
ଲକ୍ଷ୍ମୀ ନାରାୟଣ ବେନି    ହୋଇଲେ ସମ୍ମତ ।

ଏଥୁ ଅନନ୍ତରେ ରାମ    ଧନୁ କରେ ଧରି
ଦକ୍ଷିଣ କର୍ଣ୍ଣ ପର୍ଯ୍ୟନ୍ତେ    ଅଣିଲେ ଓଟାରି ।

କର୍ଣ୍ଣ ପରଯନ୍ତେ ସେ ଯେ    ଅଣନ୍ତେଣ ଗୁଣ
ଅନ୍ଦୋଳିତ ପୃଥିବୀ    କମ୍ପିଲେ ରାଜଗଣ ।

ଶ୍ରବଣରେ ମିଳି ଧନୁ    କହଇ ଗୁପତ
ହେଲେ ନାଶକାଲ ସ୍ୱାମି ।    ମୋର ପୁରୁଷାର୍ଥ ।

ସଧୀରେ ହୁଅଁଡ଼ୁ ପୁଣି    ରଖ ରଘୁବୀର ।
ତୋହର କୋପରେ କି    ରହିବ ମୋ ଶରୀର ?

କରୁଣାସାଗର ରାମ ।    ପ୍ରତିକାର କର
ଶୁଣି ହୃଦଗତେ    ବିଚାରନ୍ତି ରଘୁବୀର ।

ବୋଲନ୍ତ କାର୍ମୁକ କର୍ପା   ହେଉଛୁ କପଟ
କଥା ନ ବୁଝିଣ କର୍ପା   ମନେ ହେଉ ଖେଦ ?

ତୋତେ ଅଶ୍ୱାସନା ଯେବେ   କରିବଇଁ ମୁହିଁ
କନ୍ଦା ପାଇବ ନା ମୁହିଁ   ଗ୍ରକଗଣତହିଁ ।

ଧନୁ ପୁରାତନ ତୁ ଯେ   ଅଟୁ ଗୁଣବନ୍ତ
କାର୍ଯ୍ୟର ବେଳରେ କର୍ପା   ହେଉଛୁ କପଟ ?

ତୋତେ ଘେନ କରେ ହର   ଦକ୍ଷଯଜ୍ଞ ଧ୍ୱଂସି
ଦେବତାଙ୍କୁ କୋପିଲେ ସେ   କପିଳାସବାସୀ ।

ସେ ପାପମାନ ଯେ ତୋର   ଅଙ୍ଗେ ଅଛି ରହୁ
ଅନ ଏ ସମସ୍ତ ପାଞ୍ଚ   ଦେବ ତୋର ଦହୁ ।

ଯେତେ ଦନ ଭୋଗ ତୋରେ   ଅପୂର୍ବହିଁ ଥିଲ
କାହାର ବୋଲେ ଯେ ତାହା   ଅନ୍ୟଥା ନୋହିଲ ।

ଭୋଗଗ୍ରାଗ ଭୁଞ୍ଜିଲୁ   ଈଶ୍ୱରସମ ହୋଇ
ଜନକ ରଷିର ଇଷ୍ଟ   ଦେବତା ବୋଲାଇ ।

ଏସନକ ଧାତା ପୂର୍ବେ   କଲେକ ରଅଣ
ଜାନକୀର ସ୍ୱୟମ୍ବରେ   ହରିଲୁ ପ୍ରାଣ ।

ସେ କଥା ନକଟ ତୋର   ହେଲ ଏବେ ଅପି
ଜାଣିଣ କୋଦଣ୍ଡ ରହୁ   ଭ୍ରମନ ନୁହସି ।

ଶ୍ରୀରାମ ବଚନେ ବୋଧ   ହେଲ ଶରାସନ
ଗୁଣ ଅମଞ୍ଜନ ରାମ   କଲେ ଘନ ଘନ ।

ଦକ୍ଷିଣ କର୍ଣ୍ଣର ଯାଏ   ଗୁଣ ଅଣୁ ଅଣୁ
ଚଲ ଭୁଟିଲଟି ଜାଣ   ତେତେ ବଡ଼ ଧନୁ ।

ଶ୍ରୀରାମ ବଦନ ରୂପ  ଦେଖି ଦେବୀ ସୀତା
ପଞ୍ଚମନ ଏକ କଲେ  ଜନକଦୁହିତା ।

ନୟନଯୁଗଳେଁ ସୀତା  ଦେଖିଲେ ଏକାନ୍ତ
ମନରେ ସେ ବଗୃରିଲେ  ମୋର ଏହ କାନ୍ତ ।

ସୀତାର ମାନସ-  କୁମୁଦ କି ପ୍ରକାଶିଲା
ଧନୁର ଗୁଣକୁ ରାମ  ଯହୁଁ ଅମଷ୍ଟିଲେ ।

ସ୍ୱର୍ଗେ ଜୟ ଜୟ ଯେ  କରନ୍ତି ଦେବଗଣ
ଧନ୍ୟ କୁହ ଶ୍ରୀରାମ ତୋ  କେହି ବୁଡ଼ିପଣ ।

ସଭା ରାଜଗଣ ଯେ  ଅଶ୍ଚର୍ଯ୍ୟ ହେଲେ ଗୃହିଁ
କେ ବୋଲଇ କେବଣ  ଦେଖନ୍ତି ଏ ଅଛଇ ?

ଅପୂର୍ବ କଥା ଏ ଚାହିଁ  ଶୁଣିଲା ନ ଥିଲେ
ନୟନେ ଏ କଥା ଗୋଟି  ଦେଖା ତ ହୋଇଲା ।

ଏଥୁ ଅନନ୍ତରେ ଯେ  ଶ୍ରୀରାମ ଧନୁ ଧର
ପୁଣ ପୁଣ ଧନୁର୍ଗୁଣ  ଅଣନ୍ତ ଓଁଟାର ।

ଆଡ଼ଯାତ କର ଧନୁ  ଆକର୍ଷିଲେ ଯହୁଁ
ତେତେ ବଡ଼ ଧନୁସ୍ଥଳ  ତୁଟିଲାକ ତହୁଁ ।

ଷମ୍ବାଳଣ ଗାଢ଼େ ଯେ  ଟାଣିଲେ ରଘୁନାନ
ରଟମଟ ଶବଦ  ଶୁଭିଲା ଘନ ଘନ ।

ମଝିଠାରୁ ଭାଙ୍ଗିଲା ସେ  ଦୁଇ ଖଣ୍ଡ ହୋଇ
ଦେଖି ରାଜଗଣ  ମହାଭୟରେ ପଳାଇ ।

ଧରଣୀ କମ୍ପିଲା ଯେ  ଉଲ୍କାପାତ ହୋଇ
ଅଦତ୍ୟ ନ ଚଳିଲା  ରହିଲା ସ୍ଥିର ହୋଇ ।

ସପତ ସମୁଦ୍ରର ତରଙ୍ଗ ହୋଇ ସ୍ଥିର
ଡରେ ସ୍ତମ୍ଭୀଭୂତ ହେଲେ ସ୍ୱର୍ଗେ ସୁନାସୀର ।

ଶବ୍ଦ ଶୁଣି ପର୍ଶୁରାମ ଛାଡ଼ି ନିଜ ଗର୍ବ
ବୋଇଲେ କମ୍ପୁଛ ଏହୁ ଶବଦ ଅପୂର୍ବ ।

ଧ୍ୟାନରେ ଜାଣିଲେ ଶିବ- ଧନୁ ଭଗ୍ନ ଗଲା
ଶ୍ରୀରାମ ଶିବ ସାୟକ ଅମଙ୍ଗନ କଲା ।

ନଷ୍ଟପ୍ରାୟେ ଅଟନ୍ତି ସେହୁ ଦେବ ନାରାୟଣ
ମନରେ ଯେ ଶଙ୍କା କଲେ ପର୍ଶୁରାମ ପୁଣ ।

କଇଲାସ କନ୍ଦରେଣ ଶଙ୍କର ଗଜାସି
ଭଷାଦରେ ପାର୍ବତୀଙ୍କୁ ହରଙ୍କୁ କୋଳକରି ।

ସଦାଶିବ ପାର୍ବତୀଙ୍କି କରି ସମ୍ବୋଧନ
ଶୁଣି ଲଜାଳକ ଯେ କରନ୍ତି ବିଲୋଚନ ।

ଏସନ ସମୟେ ପୁଣି ଭଞ୍ଜିଲା କୋଦଣ୍ଡ
ଶବଦ ଶୁଭିଲା ଯେ ମେଦନୀ ନବ ଖଣ୍ଡ ।

ଲକ୍ଷେକ ବକ୍ର କ ପଡ଼ିଗଲା ଏକାବେଳେ
ଛନପୁର ଟଳମଳ ହୋଇଲା ସେ କାଳେ ।

# ଲଙ୍କାପୋଡ଼ି

## ୰ ବଳରାମ ଦାସ

ନଗ୍ର କରନାଶ୍ରେ ଏ ଯେ ଶବଦେ ବୋଲନ୍ତି
କେହୁ ଆୟୁଦାୟୁମାନ ଘେନଣ ପଳାନ୍ତି ।
କେହୁ ହାତେ ଲୁଗା କେହୁ କାଖେ ପୁଅ ଘେନ
ପୋଖରୀକୂଳକୁ ଡରେ ପଳାନ୍ତି କାମିନୀ ।

କେ ବୋଲଇ ଦାଦ ଅଗ୍ନେ କେ ବୋଲଇ ବବା
କେ ବୋଲଇ ଅଗ୍ନେ ମତେ ଛଳେ ଧର ପବା ।
କେ ବୋଲଇ ଭାଇ ଅଗ୍ନେ କେ ବୋଲଇ ନନା
କେ ବୋଲଇ ମତେ ଯେ ସମ୍ଭାଳଁ ନଅ କନା ।

କେ ବୋଲଇ ଗଲ୍ଲ ଲୋକେ ବେଗ ହୋଇ ଅସ
କେବଣ ବାପୁଡ଼ା ଯେ ଗୃହରଁ ଦଶ ଦଶ ।
କେ ଅଗ୍ନି ନ ପାର ଘରେ ପଶି ପୋଡ଼ ମଲ୍ଲ .
କେହୁ ତାଟବା ହୋଇଣ ଛଡ଼ ମୋହ ଗଲ୍ଲ ।

କେବଣ ବାପୁଡ଼ା ଯେ ଦେଖିଣ ପ୍ରାଣହାର
ବାଟ ନ ପାଇ ଭିତରେ ପଶି ପୋଡ଼ ମର ।
କୂଅଭିତରେ ପଶିଲ୍ଲ କେହୁ ଯାଇ ଡେଇଁ
ତହିଁ ପୋଡ଼ମଲ୍ଲ ସେ ଯେ ଅଗ୍ନି ଜ୍ୱାଳା ପାଇ ।

କେହୁ ପାଣି ପକାଇ ନଭଇଦ୍ୟନ୍ତି ଘର
କେ ବୋଲନ୍ତି ଅଗ୍ନି ମତେ ବେଗ କର ଧର ।
କେ ବୋଲଇ ରାବଣ ଯେ ଏହା ଅରକଲ୍ଲ
ସୀତାକୁ ଅଣି ସମ୍ପଦ ହେଲେ ନାଶ କଲ୍ଲ ।

କେ ବୋଲଇ ବାବୁ ରେ — ମୋହର ପୁଅ ନାହିଁ
କେ ବୋଲଇ କେଣେ — ପଳାଇଲା ମୋର ସ୍ୱାଇ
କେ ବୋଲଇ ମୋହର — ଜନନୀ ନ ଅଇଲା
କେ ବୋଲଇ ମୋହର — ପିଅର କେଉଁଣେ ଗଲା ।

କେ ବୋଲଇ ଲଙ୍କାକୁ — ବେଢ଼ିଲା ହୁତାଶନ
ବାହାର ହୋଇ ଯିବାକୁ — କେ ଅଛୁ ସ୍ୱଜନ ?
କେ ବୋଲଇ ଅଜ ଏଥେଁ — ମରିବା ନିଶ୍ଚିତ
କେ ବୋଲଇ ପୂର୍ବର ଗୋ — ଏହୁ କଲା କୃତ୍ୟ ।

ଏସନ ଯେବେ ପୂର୍ବରୁ — ଅଛଇ ଭବିଷ୍ୟ
ଅଜ ଏହାକୁ ଭୁଲିଲେ — ହୋଇବ ବା କିସ ?
ଲଙ୍କା ପୋଡ଼ିଯିବା କାଳେ — ସମସ୍ତେ ମରିବା
ଏତେକ ପାପ ଯୋଗକୁ — କି ବୁଦ୍ଧି କରିବା ?

କେ ବୋଲଇ ଏକାକେ — ବାନର ଏହା କରି
ଶ୍ରୀରାମ ଅଇଲେ କି — ରହିବ ଲଙ୍କାପୁରୀ ?
ଚଉକଢ ସମୁଦ୍ର ଯେ — କେଣେ ପଳାଇବା
ରାବଣର ପ୍ରସାଦେ ଯେ — ସମସ୍ତେ ମରିବା ?

ଏତେ କାଳ ନିଶ୍ଚିନ୍ତରେ — ରହୁ ଯେ ଥିଲୁଁ
ଏକାବେଳକେ ସମସ୍ତେ — ପ୍ରାଣ ଯେ ହରାଇ ।
କେ ବୋଲଇ ହୁତାଶନ — ସମସ୍ତ ଲାଗିଲା
ପବନ ବହିବାରେ — ଦ୍ୱିଗୁଣ ପୋଡ଼ିଗଲା ।

କେ ବୋଲଇ ଅଗ୍ନି ଯେ — ଉଠଇ ଅନ୍ତରାଳେ
ଦଶ ଦିଗ ଧୂମମୟ — ପବନର ବଳେ ।

କେ ବୋଲଇ ହନୁମନ୍ତ  ଥାଇ ଯେ ଅକାଶେ
ଲଙ୍କ ବେଢ଼ାଇ ଦେଇଣ  ଅଛ ଚଜପାଶେ ।
ସୁବର୍ଣ୍ଣମଧ୍ୟ ଯେ ଲଙ୍କା  ଅଙ୍ଗାର ହୋଇଲା
ଏକା ବାନର ପିଣବେ  ଏତେ କୃତ୍ୟ କଲା ।

ଏସନକ ଶକଳ  ହୁଅନ୍ତି ନରନାରୀ
ବ୍ୟାକୁଳେ କର ମାରନ୍ତି  ବିଧାତା ସୁମରି ।
ଦ୍ରବ୍ୟ ନାଶଯିବାରୁ  ବୁକୁରେ କୋଡ଼ ହାଣନ୍ତି
ମୂରୁଛି ନ ପାରିଣ  ଥୋକାଏ ଦୂର ଯାନ୍ତି

ତାଡ଼ି ସହ୍ୟ ନ ପାରିଣ  ଅସନ୍ତ ବାହୁଡ଼ି
କେହୁ ଭୂମିରେ ପଡ଼ନ୍ତି  ହୋଇଣ କଗୁଡ଼ି ।
କାହାର ପଣତେ ଯାଇ  ଲାଗିଲାକ କୋଇ
ମଲି ମଲି ବୋଲି କେହୁ  ବିକଳ ଯେ ହୋଇ ।

# ଅର୍ଜୁନର ଲକ୍ଷ୍ୟଭେଦ

## ✓ ଜଗନ୍ନାଥ ଦାସ

ଏହି କବି ପୁରୀ ଜିଲ୍ଲା ଅନ୍ତର୍ଗତ କପିଳେଶ୍ୱରପୁର ଶାସନରେ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପିତାଙ୍କର ନାମ ଭଗବାନ ପୁରାଣପଣ୍ଡା ଓ ମାତାଙ୍କର ନାମ ପଦ୍ମାବତୀ ଥିଲା । ସଂସ୍କୃତ ଭାଷାରେ ସେ ଅସାଧାରଣ ବ୍ୟୁତ୍ପତ୍ତି ଲାଭ କରିଥିଲେ । କବି ପ୍ରତାପରୁଦ୍ରଙ୍କ ରାଜତ୍ୱ କାଳରେ (୧୪୯୭—୧୫୩୯) ଆବିର୍ଭୂତ ହୋଇଥିଲେ । ତାହାଙ୍କ ରଚିତ ଓଡ଼ିଆ ଭାଗବତ ଏବାଂ ଉତ୍କଳରେ କାହିଁକି ଭାରତର ବହୁ ଅଞ୍ଚଳର ପୁରପଲ୍ଲୀରେ ମଧ୍ୟ ସମଧିକ ଆଦୃତ ଓ ପୂଜିତ । ଉତ୍କଳର ଜାତୀୟ ଜୀବନ ଗଠନରେ ଭାଗବତ ଭଳି ଦ୍ୱିତୀୟ ଗ୍ରନ୍ଥ ନାହିଁ ବୋଲିଲେ ଚଳେ । ଭାଗବତର ସରଳ ଓ ହୃଦୟସ୍ପର୍ଶୀ ଭାଷା ପାଠକକୁ ଆତ୍ମହରା କରିଦିଏ । କବି ଭାଗବତ ଛଡ଼ା ମହାଭାରତ, ଗୁପ୍ତ ଭାଗବତ, ଦାରୁବ୍ରହ୍ମ ଗୀତା, ଗଜସ୍ତୁତି, ଅର୍ଥ କୋଇଲି, ମୃଗୁଣୀ ସ୍ତୁତି, ଧ୍ରୁବ ସ୍ତୁତି, ତୁଳାଭିଣା, ଇତିହାସପୁରାଣ, ପାଷଣ୍ଡ ଦଳନ, ରାସକ୍ରୀଡ଼ା ପ୍ରଭୃତି ମଧ୍ୟପଦ୍ୟ ରଚନା କରିଥିଲେ । ଚୈତନ୍ୟ ଦେବ କବିଙ୍କୁ "ଅତିବଡ଼ୀ" ଉପାଧିରେ ଭୂଷିତ କରିଥିଲେ । ଜଗନ୍ନାଥ ଦାସ ଅତିବଡ଼ୀ ନାମରେ ଗୋଟିଏ ସମ୍ପ୍ରଦାୟ ପ୍ରବର୍ତ୍ତନ କରିଥିଲେ ।

ରାଜନ ଏଥୁ ଅନ୍ତେ ଶୁଣ
ସେହି ମଧ୍ୟରେ ଧୃଷ୍ଟଦ୍ୟୁମ୍ନ
ବୋଇଲେ ଶୁଣ ନୃପଗଣେ
ଏ ଲକ୍ଷ୍ୟ ନ ବିନ୍ଧିଲ କେଣେ

ଗୃଣ୍ଡାନ୍ତ ବ୍ରହ୍ମ ପରଯନ୍ତେ    ଅଛ ଏ ସଭା ମଧ୍ୟେ ଯେତେ ।
ଯେ ଉଠି ଏ ଲକ୍ଷ୍ୟ ବିନ୍ଧିବ    ସେ ଯାଜ୍ଞସେନୀ ଘେନିଯିବ ।
ଶୁଣିଣ ଏମନ୍ତ ବଚନ    ଉଠିଲେ ଗଙ୍ଗାର ନନ୍ଦନ ।
ମିଳିଲେ ପୃଷ୍ଠାର ଉପରେ    ଗୁଣ ଚଢ଼ାଇ ସେ ଧନୁରେ ।
ବୋଇଲେ ଶୁଣ ରାଜଗଣ    ଅବର ଧୃଷ୍ଟଦ୍ୟୁମ୍ନ ଶୁଣ ।
ବିନ୍ଧିବୁ ଯେବେ ଥିବ ଭାଗ୍ୟ    କରିହୁଁ ଅମ୍ଭେ ଦାର ତ୍ୟାଗ ।
କନ୍ୟାକୁ ନେବ ଦୁର୍ଯ୍ୟୋଧନ    ଶିଖଣ୍ଡୀ ଦ୍ରୁପଦନନ୍ଦନ ।
ବନ୍ଧ ହେ ଗଙ୍ଗାର କୁମର    ପଛେ କରିବା ସେ ବିଚାର ।
ଶିଖଣ୍ଡୀ ବଦନକୁ ଚାହିଁ    ଧନୁକୁ ଥୋଇ ଦେଇ ତହିଁ ।
ବାହୁଡ଼ି ସଭାମଧ୍ୟେ ବସି    ଦେଖି ସକଳ ଲୋକେ ହସି ।
ବୋଇଲେ ହସ୍ତିନା ରାଜନ    କି ହେଲା ଗଙ୍ଗାର ନନ୍ଦନ ?
ଚାହିଁଲେ ନପୁଂସକ ମୁଖ    କେବେ ନ ବିନ୍ଧିବୁ ବିଶିଖ ।
ପୂର୍ବର ପ୍ରତିଜ୍ଞା ଅମର    ଦେଖିଲୁ ଦ୍ରୁପଦକୁମର ।
କୃଷ୍ଣା ପୁଚ୍ଛିଲେ କେଶିନୀକି    ତୁମ୍ଭେ ଏ ବୀରକୁ ଜାଣ କି ?
କେଶିନୀ ବୋଇଲେ ଏ ବୀର    ଅଟନ୍ତି ଗଙ୍ଗାର କୁମର ।
ଏହାଙ୍କ ତୁଲ୍ୟ ବୀର ଜଣେ    ନାହାନ୍ତି ଏ ତିନ ଭୁବନେ ।
ଦୃଢ଼ପ୍ରତିଜ୍ଞ ସତ୍ୟବ୍ରତ    ବ୍ରହ୍ମଚାରୀ ଏ ବିଷ୍ଣୁଭକ୍ତ ।
କଷ୍ଟେ ଏ ଲକ୍ଷ୍ୟ ବିନ୍ଧିଥାନ୍ତେ    ଶିଖଣ୍ଡୀ ବଦନ ଚାହାନ୍ତେ ।
ଧନୁକୁ ଥୋଇଦେଇ ଗଲେ    ପୂର୍ବ ପ୍ରତିଜ୍ଞା ରକ୍ଷା କଲେ ।
ସଭାରୁ ଉଠିଗଲେ ଦ୍ରୋଣ    ବୋଇଲେ ଧୃଷ୍ଟଦ୍ୟୁମ୍ନ ଶୁଣ ।
ଯେବେ ଏ ଲକ୍ଷ୍ୟକୁ ବିନ୍ଧିବୁ    କନ୍ୟାକୁ ଦୁର୍ଯ୍ୟୋଧନେ ଦେବୁ ।
ଏମନ୍ତ କହି ଧନୁ ଧରି    ନାରାଚ ତହିଁ ଯୋଗକରି ।
ଜଳ ଉପରେ ରଖି ଦୃଷ୍ଟି    ବିନ୍ଧିଲେ କରି ଊର୍ଦ୍ଧ୍ୱ ମୁଷ୍ଟି ।
ନାରାଚ ସୁଦର୍ଶନ ଚକେ    ବାଣ ଲେଉଟି ପଡ଼େ ବକେ ।

ବାହୁଡ଼ ଅସି ଗୁରୁଦ୍ରୋଣ ବସିଲେ ସଭାମଧ୍ୟେ ପୁଣ ।
ଦ୍ରୌପଦୀ ବୋଇଲେ କେଶିନୀ ଏହାଙ୍କୁ ଅଛ କି ଗୋ ଚିହ୍ନି ?
କେଶିନୀ ବୋଇଲେ ଏ ଦ୍ରୋଣ ପରଶୁରାମ ଶିଷ୍ୟ ଜାଣ ।
ଏ କୁରୁ ପାଣ୍ଡବଙ୍କ ଗୁରୁ ତୋ ପିତା ମିତ୍ର ଏ ପୂର୍ବରୁ ।
ସଭାରୁ କୃପାଚାର୍ଯ୍ୟ ଉଠି ଜଳରେ ଦୃଷ୍ଟି ଊର୍ଦ୍ଧ୍ୱେ ମୁଷ୍ଟି ।
ବାଣ ବିନ୍ଧିଲେ ଧନୁ ଧରି ଚକ୍ରେ ବାଜି ସେ ଅସେ ଫେରି ।
ଅକୃର୍ଥେ ତହୁଁ ବାହୁଡ଼ିଲେ ଦ୍ରୋଣଙ୍କ ପୁତ୍ର ଯେ ଉଠିଲେ ।
ତେସନ ବିନ୍ଧି ଧନୁ ଧରି ଚକ୍ରେ ସେ ବାଜ ଅସେ ଫେରି ।
ବାହୁଡ଼ି ସଭାରେ ବସିଲେ ଦେଖି ଦ୍ରୌପଦୀ ପଚାରିଲେ ।
ଏ ବୀର ଗୋଟି କିଏ କୁହ କେଶିନୀ ବୋଲେ ଦ୍ରୋଣପୁଅ ।
ଅଟନ୍ତି ଚିରଜୀବୀ ଏହ ଏହାଙ୍କ ସମ ବୀର ନାହିଁ ।
ସଭାରୁ ଉଠି କର୍ଣ୍ଣବୀର ମିଳିଲେ ପଟାର ଉପର ।
ଦ୍ରୌପଦୀ ବୋଲନ୍ତି କେଶିନୀ ଜାଣିଛ କି ଏ ବୀରମଣି ?
କେଶିନୀ ବୋଇଲେ ଗୋ ଶୁଣ ଏହାର ନାମ ବୀର କର୍ଣ୍ଣ ।
ଦୁର୍ଯ୍ୟୋଧନର ସେନାପତି ନ ସହୁ ପାଦଭରା କ୍ଷିତି ।
ନିତ୍ୟ ସୁବର୍ଣ୍ଣ ଶତ ଭରେ ଏହାଙ୍କୁ ତୋଷଇ ଗୋ ଡରେ ।
ଏ ତାହା ତ୍ରିଭୁବନ ଦାନେ ତୋଷନ୍ତି ସାଧୁ ବିପ୍ର ଜନେ ।
କୃଷ୍ଣଙ୍କୁ ବଳଦେବେ କହୁ କର୍ଣ୍ଣ ବିନ୍ଧିବ ଲକ୍ଷ୍ୟ ଏହୁ ।
ଶୁଣି ବୋଲିନ୍ତି ବାସୁଦେବ ମତ୍ସ୍ୟେ ନ ଲାଗି ବାହୁଡ଼ିବ ।
କର୍ଣ୍ଣ ଆସିବ ଲକ୍ଷ୍ମୀ ପାଇ ଦେଖ ଏକ୍ଷଣି ଏଥେ ଥାଇ ।
କର୍ଣ୍ଣ ଧନୁରେ ଦେଲା ଗୁଣ ଟଙ୍କାର ଧ୍ୱନି ପୁନଃ ପୁନ ।
ସୁବର୍ଣ୍ଣ ଘଟେ ମୀନ ଛାଇ ଦେଖଇ ଅଧୋମୁଖ ହୋଇ ।
ଊର୍ଦ୍ଧ୍ୱକୁ କରି ଧନୁମୁଷ୍ଟି ବେଗେ ବିନ୍ଧିଲା ବାଣ ଗୋଟି ।
ବାଜି ସେ ସୁଦର୍ଶନ ଚକ୍ରେ ଲେଉଟି ଅସି ପଡ଼େ ବକ୍ରେ ।

ତା ଦେଖି ବାହୁଡ଼ିଲ୍ଲ କର୍ଣ୍ଣ ସଭ୍ରରେ କହେ ଦୁର୍ଯ୍ୟୋଧନ ।
ଅଛ ଅଦ୍ଭୁତ ଏହୁ ଲକ୍ଷ୍ୟ ତେଣୁ ନୋହିଲେ କେହୁ ଶକ୍ୟ ।
ତିନ ଭୁବନେ ବୀର ନାହିଁ ଏ ଲକ୍ଷ୍ୟ ବିନ୍ଧିବାକୁ କେହୁ ।
ତା ଶୁଣି ସଭାମୁଖ ଚାହିଁ ଅନଙ୍ଗସେନ ରଜା କହୁ ।
ଏ ତିନି ଭୁବନରେ ଜାଣ ବିନ୍ଧି ପାରନ୍ତି ଷଡ଼ଜଣ ।
ହର ଅର୍ଜ୍ଜୁନ ପର୍ଶୁରାମ ଇନ୍ଦ୍ର ବାସୁକି ବୀର ସ୍ୱଷ୍ନ ।
ତା ଶୁଣି ରଜାଏ କହନ୍ତି କିପାଇଁ କୃଷ୍ଣ ନ ବିନ୍ଧନ୍ତି ?
ଇନ୍ଦ୍ର ବାସୁକି ପର୍ଶୁରାମ ନାହାନ୍ତି ନ ବିନ୍ଧିବେ ସ୍ୱଷ୍ନ ।
ପାଣ୍ଡବେ ମଲେ ଜତୁଗୃହେ ବିଫଳ ହେଲ୍ଲ ଏ କଷ୍ଟହେ ।
କେଶିନୀ ବୋଲେ ଯାଜ୍ଞସେନ । ବୁର ଗୋ ଏକ ନୃପମଣି ।
ଯାହାକୁ ଦେବେ ମୋର ପିତା ମୁଁ ତାର ହୋଇବି ବନିତା ।
ରାମ ବୋଇଲେ ରେ କହ୍ନାଇ ବେଗେ ଏ ଲକ୍ଷ୍ୟ ବିନ୍ଧ ଯାଇ ।
ଦ୍ରୁପଦ ରଜାର ଦୁଲଣୀ ହୋଇବ ଦ୍ୱାରକାମଣ୍ଡଣୀ ।
ତା ଶୁଣି ଚକ୍ରଧର କହୁ ବାଣ ଯେ ମନଭେଦୀ ନାହିଁ ।
ଚାଲ ଦ୍ୱାରକାପୁରେ ଯିବା କିପାଇଁ ଅକାରଣେ ଥିବା ।
ତା ଶୁଣି ବୋଲନ୍ତି ଶ୍ରୀକୃଷ୍ଣ ଏ ଲକ୍ଷ୍ୟ ବିନ୍ଧିବ ଅର୍ଜ୍ଜୁନ ।
ହସି ବୋଇଲେ ହଳଧାରୀ ସ୍ୱପନ ଦେଖୁ କି କହ୍ନାଇ ?
ଆମ୍ଭେ ଯେ ସାକ୍ଷାତେ ଦେଖିଲେଁ ଜତୁଗୃହରେ ପୋଡ଼ି ମଲେ ।
କୃଷ୍ଣ ବୋଇଲେ ପାଞ୍ଚ ଜଣ ଜାଣ ମୋହର ପଞ୍ଚ ପ୍ରାଣ ।
ସେ ମଲେ ଦେଖନ୍ତ କି ମୋତେ ମୁଁ ରହୁ ତାହାଙ୍କ ସଙ୍ଗତେ ।
ମହୀର ଭାର ହରାଇବି ଦୁଷ୍ଟଙ୍କୁ ସଂହାର କରିବି ।
ଶୁଣି ବୋଲନ୍ତି ବଳଦେବ କାହିଁ ଅଛନ୍ତି ସେ ପାଣ୍ଡବ ?
କୃଷ୍ଣ କହନ୍ତି ଦେଖ ଚାହିଁ ବିପ୍ର ସଭାରେ ପାଞ୍ଚ ଭାଇ ।
ଦେଖି ଆଶ୍ଚର୍ଯ୍ୟ ବଳଦେବ ବୋଇଲେ ଧନ୍ୟ ବାସୁଦେବ ।

ତୋହର ମାୟା ମାୟାଧର ମୋତେ ହୋଇଲା ଅଗୋଚର ।
ଯୁଧିଷ୍ଠି ଅର୍ଜୁନଙ୍କୁ ଚାହିଁ ନୟନ ଠାରି ଦେଲେ କହି ।
ସଭାରୁ ଉଠନ୍ତେ ଅର୍ଜୁନ କର ଧରିଲେ ବିପ୍ରଗଣ ।
ସଭାରେ ବସାଇଲେ ନେଇ ବୋଇଲେ ତୁ ହୋଇଲୁ କି ବାଇ ?
ଦ୍ରୋଣ କଳିଙ୍ଗ ଦୁର୍ଯ୍ୟୋଧନ ଗଙ୍ଗାନନ୍ଦନ ଶଲ୍ୟ କର୍ଣ୍ଣ
କୃପଆଚାର୍ଯ୍ୟ ଦ୍ରୋଣସୁତ ମଗଧ ରାଜା ଭଗଦତ୍ତ
ବାଣ ନରକ ବଜ୍ରନାଭ ଏ ଆଦ ବୀରେ କରି ଗର୍ବ
ବିନ୍ଧି ନ ପାରି ଲାଜ ପାଇ ବସିଲେ ସଭା ମଧ୍ୟେ ଯାଇ ।
ତୁ କାହୁଁ ସେ ଲକ୍ଷ୍ୟ ବିନ୍ଧିବୁ ବିପ୍ରକୁ ଲଜ୍ଜା କରାଇବୁ ।
ଏମନ୍ତେ ବ୍ରାହ୍ମଣେ କହିଲେ କର ଧରିଣ ବସାଇଲେ ।
ଦେଖି ଦ୍ରୁପଦରାଜା ଯାଇ ସଭାର ମଧ୍ୟେ ଉଭା ହୋଇ ।
ଡାକେ ବୋଇଲେ ଅଛି ଯେତେ କ୍ଷତ୍ରିୟ ବ୍ରହ୍ମ ପରିଯନ୍ତେ
ଯେ ପାରି ଲକ୍ଷ୍ୟ ବିନ୍ଧ ଯାଇ ଏହା କହନ୍ତେ ନରସାଇଁ
ସଭାରୁ ଉଠିଲେ ଅର୍ଜୁନ କେଶରୀ ଗହ୍ୱରୁ ଯେସନ
ଦେଖି ବ୍ରାହ୍ମଣେ ଧରି କର ବୋଲନ୍ତି କନ୍ୟାଲୋଭେ ତୋର
ବିହ୍ୱଳ ହେଲା କି ରେ ମତି ଦେଖିଣ ସୁନ୍ଦରୀ ଯୁବତି ?
କହୁତ ପଥକଷ୍ଟ ସହୁ ଧନଲୋଭରେ ଅଛୁ ରହୁ ।
ତୁ ତାହା ହରାଇବୁ ମନ୍ଦ କ୍ଷତ୍ରିୟେ ଲଗାଇବେ ଦ୍ୱନ୍ଦ ।
ଯୁଧିଷ୍ଠିରଙ୍କୁ ଚାହିଁ ପୁଣି ବୋଲନ୍ତି ଅହୋ ବିପ୍ରମଣି ।
ଦେଖ ଏ ଦ୍ୱିଜ ମନ୍ଦପଣେ ଅଧର୍ମେ ଯାଏ କଣ୍ଟାବଣେ ।
ବୋଲନ୍ତି ଧର୍ମ ଯୁଧିଷ୍ଠିର ତୁମ୍ଭେ କପାଇଁ ନାସ୍ତି କର ?
ପୂର୍ବେ ଯେ ପର୍ଶୁରାମ ମୁନି ଯୁଝିଲେ ଧନୁଶର ଘେନି ।
ବାଳକାଳରୁ ଏହାଙ୍କର ଅଭ୍ୟାସ ଅଛି ଧନୁଶର ।
ଯାଉ ସେ ନ କର ବାରଣ ସକଳେ କରିବା କଲ୍ୟାଣ ।

ଲକ୍ଷ୍ୟ ଭେଦି ଏ କନ୍ୟା ନେଇ — କ୍ଷତ୍ରିଙ୍କ ମୁଖେ କାଳି ଦେଇ

ସକଳେ କଲେ ଆଶୀର୍ବାଦ — ଯାଅ ହୋ ବିପ୍ର ଲକ୍ଷ ଭେଦ

ବିପ୍ରଙ୍କ ଆଜ୍ଞା ଶିରେ ଘେନ — ସଭାରୁ ଉଠିଲେ ଫାଲ୍‌ଗୁନ

ମତ୍ସ୍ୟହିଦର ଠାଣି ମଣ୍ଡି — ଦେଖି ଦୁର୍ଜନ ନୃପମଣି

ଭରସେ ମୁଖ ପୋଛି ବସି — ସଭାମଧ୍ୟରୁ ପାର୍ଥ ଆସି

ଋଷି ମୁନିଙ୍କି ପ୍ରଣମିଲେ — ସକଳେ କଲ୍ୟାଣ ବାଞ୍ଛିଲେ

ବିପ୍ର ସଭାରୁ ଗୃହେ ପୁଣି — ପ୍ରଣାମ କଲେ ବୀରମଣି

ବିପ୍ରରୁ ଗୃହେ ଧର୍ମରାଜ — ବୋଇଲେ ପ୍ରଣମଇଁ ଦ୍ୱିଜ

ସକଳେ ହୋଇ ଏକମୁଖ — ବୋଲି ଏ ବିପ୍ର ଭେଦୁ ଲକ୍ଷ୍ୟ

ତହୁଁ କ୍ଷତ୍ରିୟ ସଭା ଗୃହେ — ଦେଖିଲେ ଭୀଷ୍ମ ଦ୍ରୋଣ ଯହିଁ

କୃପଆଚାର୍ଯ୍ୟ ଶଲ୍ୟରାୟ — ପ୍ରଣମି କୁନ୍ତୀର ତନୟ ।

ଭୀଷ୍ମ ବୋଇଲେ ଦେଖ ଦ୍ରୋଣ — ପ୍ରଣାମ କରୁଛି ବ୍ରାହ୍ମଣ ।

କର୍ଣ୍ଣ ଆନନ୍ଦ ମନ ହୋଏ — ଦେଖିଲି ପ୍ରାୟେ ଜଣାପାଏ ।

ଉଦ୍ଧବୁ ଗୃହେଁଙ୍କ ଅର୍ଜୁନ — ବିଜୟେ ରାମ ଭଗବାନ ।

ତାହାଙ୍କୁ ପ୍ରଣମିଲେ ପାର୍ଥ — ଦେଖି ଆନନ୍ଦେ ଜଗନ୍ନାଥ ।

ବୋଇଲେ ବଳରାମେ ଗୃହେଁ — କଲ୍ୟାଣ କରିବା ଗୋସାଇଁ ।

ବୋଇଲେ ପ୍ରଭୁ ବଳଦେବ — ଅର୍ଜୁନ ଏ ଲକ୍ଷ୍ୟ ଭେଦିବ ।

କନ୍ୟା ଲଭିବ ଦୁର୍ଯ୍ୟୋଧନ — ପାଣ୍ଡବ ପିତା ପାଞ୍ଚ ଜଣ ।

ଏତେକ ରାଜା ଏକ ଯହିଁ — ଏ କାହୁଁ ହୋଇବେ ବିଜୟୀ ?

କୃଷ୍ଣ ବୋଇଲେ ଥାଉ ଅମ୍ଭେ — ଅନ୍ୟାୟ କରିବେ ସେ ଯେବେ ।

ଛେଦିବ ସମସ୍ତଙ୍କ ଶିର — ଯେଣୁ ମୋ ନାମ ଚକ୍ରଧର ।

ଇନ୍ଦ୍ରାଦି ଦେବତାଙ୍କୁ ପୁଣି — ପ୍ରଣାମ କରି ଫାଲଗୁନ ।

ଗୃହଇ ଧୀରେ ଧୀର କରି — ଗୋବିନ୍ଦ ଗୋବିନ୍ଦ ସୁମରି ।

ଦ୍ରୌପଦୀ ବାମ ନେତ୍ର ସ୍ଫୁରେ — ପ୍ରେମ ପୁଲକେ ଆନନ୍ଦରେ ।

ବୋଇଲେ କେଶିନୀ ଗୋ ଦେଖ   ଅପୂର୍ବ କି ସୁନ୍ଦର ମୁଖ ।
ଲାବଣ୍ୟ ରୂପ କି ମାଧୁରୀ   ନୋହିବେ କୋଟି କାମ ସରି ।
ସତେ କି ଦଶିବ ମୋ ଭାଗ୍ୟ   ହେବ ଏହାଙ୍କ ଦାସୀଯୋଗ୍ୟ ।
ହେ ଦୀନବାନ୍ଧବ ମୁରାରି   ଶ୍ରୀବରାହ ହେ ମଧୁହାରି ।
ସତେ କି କରୁଣା କରିବ   ଏ ବିପ୍ର ଏ ଲକ୍ଷ ବିନ୍ଧିବ ।
ତୁ ଦେବ ଅନ୍ତର୍ଯ୍ୟାମି ନାଥ   ଫେଡ଼ ଏ ଅବଳା ଆରତ ।
ଏମନ୍ତ ଶୁଣିଣ କେଶିନୀ   ବୋଇଲା ଆଲୋ ଯାଜ୍ଞସେନୀ ।
ହୋଇ ତୁ ରାଜାର ଦୁହିତା   ହେବୁ ଏ ବିପ୍ରର ବନିତା ।
ଏମନ୍ତ କହୁ ହେଲା ତୁନି   ପଠା ଉପରେ ଫାଲଗୁନି ।
ଧନୁ ଧଇଲେ ବାମ କରେ   ସିଂହ ଯେସନେ ଗଜବରେ ।
କର୍ଣ୍ଣରେ ଦେଇଥିବା ତୂଣ   ହୂଳରୁ କାଢ଼ି ଆଣି ପୁଣ
ଧନୁରେ ଚଢ଼ାଇଲେ ନେଇ   ଧୃଷ୍ଟଦ୍ୟୁମ୍ନଙ୍କ ମୁଖ ଚାହିଁ ।
ବୋଇଲେ ବିନ୍ଧିବା ବିଧାନ   କହ ହେ ନୃପତିନନ୍ଦନ ।
ବିନ୍ଧିବା ଯେବେ ଆମ୍ଭେ ଲକ୍ଷ୍ୟ   ଅଛନ୍ତି ଏଥେ ନୃପ ଲକ୍ଷ ।
ଏ ନିକ ଦ୍ୱନ୍ଦ ଆରମ୍ଭନ୍ତି   ଅନ୍ୟାୟ ମାର୍ଗରେ ଚାଲନ୍ତି ।
ତା ଶୁଣି ଧୃଷ୍ଟଦ୍ୟୁମ୍ନ କହି   ଘଟରେ ଜଳ ଅଛି ରହି ।
ଉଚ୍ଚରେ ଦେଖ ନବ ତାଳେ   ଚକ୍ର ଭ୍ରମଇ ଅନ୍ତରାଳେ ।
ଅଛଇ ତା ଉପରେ ମୀନ   ଯୋଖିବ ଏ ଧନୁରେ ବାଣ ।
ଜଳରେ ଦୃଷ୍ଟି ଊର୍ଦ୍ଧ୍ୱେ ମୁଷ୍ଟି   ବିନ୍ଧିବ ଚକ୍ରକ୍ରେ ଫୁଟି ।
ମୀନର ବାମ ଚକ୍ଷୁ ଦେଇ   ଦକ୍ଷିଣ ନେତ୍ରେ ଲାଗି ରହି ।
ଏମନ୍ତେ ଏ ଲକ୍ଷ୍ୟ ବିନ୍ଧିବ   ଆମ୍ଭ କୃଷ୍ଣାଙ୍କୁ ନେଇଯିବ ।
ଅନ୍ୟାୟ କଲେ ରାଜଗଣ   ସାହା ହୋଇବୁ ଦେଇ ସୈନ୍ୟ ।
ଧନୁକୁ ଧରିଣ ଅର୍ଜୁନ   ଗୁଣ ଟଙ୍କାର ଘନ ଘନ ।
ସେ ନାଦ ବ୍ୟାପିଲା ଗଗନେ   ଭୟେ କମ୍ପିଲେ ଦୁଷ୍ଟଜନେ ।

ବିନ୍ଧିଲେ ତହୁଁ ଏକ ଶରେ ପଡ଼ିଲା ଦ୍ରୋଣଙ୍କ ପଦୁରେ ।
ପ୍ରଣମି ବାହୁଡ଼ି ଆସିଲା ଦ୍ରୋଣଙ୍କ ଚିତ୍ତ ଉଲ୍ଲସିଲା ।
ଶିଷ୍ୟଙ୍କୁ ବୋଇଲେକ ଦ୍ରୋଣ ଜାଣିଲ ନଷ୍ଟେ ଏ ଅର୍ଜୁନ ।
ଶିଷ୍ୟ ବୋଇଲେ କୁନ୍ତୀସୁତେ ସତେ କି ଦେଖିବା ଏ ନେତେ ।
ଦ୍ରୋଣ ବୋଇଲେ ଗୁପ୍ତେ ମୁହିଁ ଏ ବିଦ୍ୟା ପାର୍ଥେ ଥିଲି ଦେଇ ।
ଧୀର ଗମ୍ଭୀର ସ୍ୱରେ ପାର୍ଥ କହଇ ଅହେ ନୃପନାଥ ।
ଫାଡ଼ିଲେ ଅସି ଲକ୍ଷ ବନ୍ଧ ପଶ୍ଚାତେ ନ କରିବ ଦ୍ୱନ୍ଦ ।
ସାକ୍ଷୀ ରହିଲ ଦଳପାଳେ ଅବର କୃଷ୍ଣ କାମପାଳେ ।
ସଭୁରି ଦୃଷ୍ଟି ପାର୍ଥଙ୍କଠି ନୀରବେ ଅଛନ୍ତି ଯେ ରହି ।
ଅର୍ଜୁନ ପୁନଃପୁନ କହି ଏ ଲକ୍ଷ୍ୟ ବିନ୍ଧୁଅଛି ମୁହିଁ ।
ସକଳେ ହୋଇ ଏକମୁଖୀ ବୋଇଲେ ବିନ୍ଧ ବନ୍ଧ ଲକ୍ଷ୍ୟ ।
ସୁନ୍ଦର ମନଭେଦୀ ଶର ଯୋଚନ୍ତେ ଜାଣି ଚକ୍ରଧର ।
ଚକ୍ରକୁ ନେଲେ ଆଡ଼ମ୍ବର ବନ୍ଦିଲେ ଦ୍ରୋଣଙ୍କୁ ସୁନ୍ଦର ।
ଚକ୍ରରନ୍ଧ୍ରରେ ବାଣ ଯାଇ ମୀନର ବାମ ଚକ୍ଷୁ ଭେଦଇ
ଦକ୍ଷିଣ ନେତ୍ରେ ଗଲା ଗଳି ତା ଦେଖି ପ୍ରଭୁ ବନମାଳୀ
ଫୁଙ୍କିଲେ ପାଞ୍ଚଜନ୍ୟ ଶଙ୍ଖ ପୂରିଲା ଜୟଶବ୍ଦେ ଦିଗ ।
ସଭାରେ ଜରାସନ୍ଧ ଥିଲା ନୋହିଲା ନୋହିଲା ବୋଇଲା ।
ମୀନର ନେତ୍ରେ ନାହିଁ ବାଣ କେମନ୍ତେ କରିବା ପ୍ରମାଣ ।
ଦ୍ରୁପଦ ବୋଲେ ମିଛେ ଗୋଳ କପାଇଁ କର ମହୀପାଳ ?
ନୋହିଥିଲେ କି ପଦ୍ମମୁଖ ବଜାଇଥାନ୍ତେ ଜୟ ଶଙ୍ଖ ?
ତା ଶୁଣି କହେ ଶିଶୁପାଳ ଅଟିବା ଜାତି ସେ ଗୋପାଳ ।
ସମ କହିଲେ ଶ୍ରୀହରିଙ୍କି ଅର୍ଜୁନ ଲାଞ୍ଚ ଦେଇଛି କି ?
ତେଣୁ ସେ ନ ବିନ୍ଧୁଣୁ ଲକ୍ଷ୍ୟ ତୁ ଅଗ ବଜାଉଛୁ ଶଙ୍ଖ ।
କ୍ରୋଧରେ ବୋଇଲେ ଗୋବିନ୍ଦ ଦୁଷ୍ଟେ କରନ୍ତି ମିଛେ ଦ୍ୱନ୍ଦ ।

କହୁଲେ ଲକ୍ଷ ଶତ ବାର  ବନ୍ଧି ପାରିବ ଦ୍ୱିଜବର ।
ଜଛେ କହନ୍ତେ ଜଗନ୍ନାଥ  ତା ଶୁଣି ବୋଲେ ବୀର ପାର୍ଥ ।
ବୃଥାରେ କର୍ଣ୍ଣା କର ଗୋଳ  ବନ୍ଧପାରଇ ଶତେ ବେଳ ।
ମିଥ୍ୟା ବଚନ ନୋହେ ଶର  ଜଳର ବୁଦ୍‌ବୁଦ୍ ଆକାର ।
ତା ଶୁଣି ଦ୍ରୁପଦ ସାନନ୍ଦ  ବନ୍ଧ ହୋ ବୋଲେ ଜରାସନ୍ଧ ।
ତା ଶୁଣି ପାର୍ଥ ଧନୁର୍ଦ୍ଧର  ଗୁଣେ ବସାଇ ବେନି ଶର
ବୋଇଲା ଏମନ୍ତ ବୁଝାଇ  ଚକ୍ର ଛେଦିବ ଏକ ଯାଇ ।
ଫୁଟାଇ ମୀନ ବାମ ଅକ୍ଷି  ଦକ୍ଷିଣ ନେବେ ଥିବ ଲକ୍ଷି ।
ତକ୍ଷଣେ ବେନି ଶର ଗଲେ  ତେସନ ଚକ୍ରକୁ ଛେଦିଲେ ।
ଦ୍ରୁଷ୍ଟଙ୍କ ପାଖେ ଧୃଷ୍ଟଦ୍ୟୁମ୍ନ  ଦେଖାନ୍ତେ ହୋଇଲେ ମଗନ ।
ଶଙ୍ଖ ଫୁଙ୍କିଲେ ଦେବସଙ୍ଘ  ସଭାରେ ଶୁଭେ ଜୟ ଜୟ ।
କହଇ ଜଗନ୍ନାଥ ଦାସ  ମହାଭାରତ ସୁଧାରସ ।

# କଂସବଧ

## ✓ ଜଗନ୍ନାଥ ଦାସ

ଶୁଣ ସଜ୍ଜନ ବୀରରସ କଂସ ଯେ ହୋଇଲା ହରଷ ।
ରାମ-ମୁଷ୍ଟିକେ ମଲ୍ଲମର ଗୃଣୁର ସଙ୍ଗେ ନରହର ।

ହସ୍ତ ଚରଣ ଛନ୍ଦାଛନ୍ଦ ଗଜକୁ ଗଜ ଯେହ୍ନେ ବନ୍ଧ ।
ଏକ ଆରକେ ବଳୀୟାର ରାମଙ୍କୁ କରେ ସେ ପ୍ରହାର ।

ମୁଷ୍ଟିକ ମୁଷ୍ଟି ପରତାଳ ଦେହ୍କୁ ଗଳଇ ଶ୍ରମଝାଳ ।
ଜାନୁକୁ ଜାନୁ ପରବନ୍ଧ କୋପେ କରନ୍ତି ବୀରନାଦ !

ମୁଣ୍ଡରୁ ମୁଣ୍ଡ ମସମସ ହୃଦରେ ହୃଦ ଭଡ଼ାଭଡ଼ ।
ଧରି ଘୂରାଇ ପୁଣ ଛାଡ଼ି ପୁଣ ବସନ୍ତ ବେଗେ ମାଡ଼ି ।

ପୁଣି ଛଡ଼ାଇ ପଛ ଘୁଞ୍ଚି ଝଣନ୍ତି ବେଗେ ବଳ ଅଞ୍ଚି ।
ଏକ ଆରକେ ଧରି ବେଗେ ଗର୍ଜି ପଡ଼ନ୍ତି ଭୂମିଭାଗେ ।

ପେଲି ପକାଇ ପୁଣ ଉଠି ହୃଦେ ତାଡ଼ନ୍ତି ବଜ୍ରମୁଷ୍ଟି ।
ପୁଣ ଧରନ୍ତି ପୁଣ ଛାଡ଼ ମୁଣ୍ଡରୁ ମୁଣ୍ଡ କୋଡ଼ାକୋଡ଼ ।

ରୁଧିର ବହେ ତନୁ ଫାଟି ଦେହକୁ ଦେହ ପିଠାପିଠି ।
ପର୍ବତ ପ୍ରାୟେ ବେନି ମାଲେ ଯୁଝନ୍ତି ରାମକୃଷ୍ଣ ଭଲେ

ଦେଖି ବୋଲନ୍ତି ନରନାରୀ ଅନ୍ୟାୟ କଲା ଦଣ୍ଡଧାରୀ ।
ବାଳକ ରାମ କୃଷ୍ଣ ଦୁଇ ମାଲଙ୍କ ସଙ୍ଗତେ ଯୁଝାଇ ।

କେମନ୍ତେ ଦେଖୁଅଛ ଏହା ହୃଦୟେ ନ କଷଇ ଦୟା ।
ମଷଇ ବାଳୁତ ପୁଅଙ୍କୁ ଧର୍ମ କି ସହିବ ଏହାକୁ ?

ସଭାରେ ବସି ବଡ଼ଲୋକେ ଅଧର୍ମ କରୁଛନ୍ତି ଥୋକେ ।
ସକଳେ କଂସ ପ୍ରିୟକାରୀ ଧର୍ମ ଅଧର୍ମ ନ ବଚାର

ପୃଚ୍ଛେ କେ ଅବା ବଳୀୟାର    ଏହା ନ କରନ୍ତି ବିଚାର ।
ପର୍ବତ ପ୍ରାୟ ବେନି ମାଲ    ବଜ୍ର-ଶରୀର ଏହାଙ୍କର ।

ବାଳକ ପୁଅଙ୍କୁ ଅନାଅ    ଅଛନ୍ତି ସୁକୁମାର ଦେହ ।
ଏହୁ ସଭାରେ ଧର୍ମ ନାହିଁ    ଏଠାରେ ଥିବା ନାଁ ଯୋଗାଇ ।

ମୁନିଏ କହିଛନ୍ତି ପୂର୍ବେ    ବେଦ ପୁରାଣର ପ୍ରସ୍ତାବେ ।
ଅଧର୍ମ କୁଟ ସଭା ଯହିଁ    ପଣ୍ଡିତେ ନ ବସିବେ ତହିଁ ।

ସଭାର ଦୋଷ ଯେ ଜାଣନ୍ତି    ବିଚାର ପ୍ରବେଶ ନୁହନ୍ତି ।
ଜାଣି ନ ଜାଣି ମୃଷା କହୁ    ନରକେ ପଡ଼ନ୍ତି ସେ ଯାଇ ।

ଏମନ୍ତେ ରାମ କୃଷ୍ଣ ଭୁଲେ    ସମର କରୁଛନ୍ତି ମାଲେ ।
ଏକ ଆରକେ ଛିଦ୍ର ଠାଣି    ନିଷ୍ଟଳ କରୁଛନ୍ତି ଅଙ୍ଗ ।

ରାମଗୋବିନ୍ଦେ ନାରୀ ଗୃହିଁ    କହନ୍ତି ଅଙ୍ଗୁଳି ଦେଖାଇ ।
ଦେଖ ଏ କୃଷ୍ଣର ବଦନ    ଗଣ୍ଡରୁ ଝାଳକଣାମାନ ।

ଫୁଟିଲା ପଦ୍ମକୋଷ କି ସେ    ଜଳ ସିଞ୍ଚିଲା ପ୍ରାୟେ ଦିଶେ ।
ଦେଖ ଏ ରାମର ଲୋଚନ    ତମ୍ବାର ପ୍ରାୟେକ ବଦନ ।

ଗୃହାନ୍ତ ମୁଷ୍ଟିକ-ବଦନ    ଅଳପ ହାସେ ଶୋଭମାନ ।
ଧନ୍ୟ ସେ ବ୍ରଜଭୂମି ଦେଶ    ପୁଣ୍ୟ ସେ କଲ୍ପ ଗୋ ଅଶେଷ ।

ମାୟାମନୁଷ୍ୟରୂପ ଧରି    ଯହିଁ ବୁଲନ୍ତି ରାମ ହରି ।
ଚନ୍ଦନଚନ୍ଦ ବନମାଳେ    ଗୋପାଳପୁଅଙ୍କର ମେଳେ

ଗାଈ ଚରାଇ ବେଣୁସ୍ୱନେ    ପାଦେ ଚଳନ୍ତି ବନେ ବନେ ।
ଧ୍ୱଜ ଅଙ୍କୁଶ ଚିହ୍ନ ପାଦେ    ଶଙ୍କର ପୂଜନ୍ତି ଆନନ୍ଦେ ।

ନନ୍ଦର ବ୍ରଜେ ଗୋପନାରୀ    ଅନେକ ତପ ଛନ୍ତି କରି ।
ଅପୂର୍ବ ମୁଖ ଏହାଙ୍କର    ଦେଖି ତେଜିଲେ ଘର ଦ୍ୱାର ।

ପିବନ୍ତି ଚକ୍ଷୁଦ୍ୱାରେ ରୂପ    ଅଜ୍ଞାନୀ ଜନଙ୍କୁ ଦୁରାପ ।
ଦୋହନେ ମନ୍ଥନେ ରନ୍ଧନେ    ଲେପନେ ଦୋଳା ଅବଧାନେ ।

ଅଗଣା ପିଣ୍ଡା ଛେର୍ ଦେଇ    ଯେତେ ବେପାର ଗୃହେ ଥାଇ ।
ଏହାର ନାମ ଗାଇଁ ତୁଣ୍ଡେ    ଗୋପୀଏ ହାଟ ରାଜଦାଣ୍ଡେ ।

ଏହାର ପାଦେ ଚିତ୍ତ ଦେଇ    ସୁସ୍ୱର କଣ୍ଠେ ଗୀତ ଗାଇ ।
ଧନ୍ୟ ତାହାଙ୍କର ଜୀବନ    କୃଷ୍ଣଙ୍କୁ ନ ଜାଣନ୍ତି ଆନ ।

ଗୋରୁ ଚରାଇ ବୃନ୍ଦାବନେ    ଏଯେ ଆସନ୍ତି ଗୃହମାନେ ।
ଫିବାର ବେଳେ ବେଣୁ ଗୀତ    ଶୁଣି ହୁଅନ୍ତି ମୂରୁଛିତ ।

ଘରୁ ବାହାର ହୋଇ ଦେଖି    ନିର୍ମଳ କରୁଥାନ୍ତି ଆଖି ।
ଏମନ୍ତ ବୋଲୁ ବୋଲୁ ଜନେ    କୋପ ବଢ଼ିଲା କୃଷ୍ଣମନେ ।

ମଞ୍ଚାରେ ବସି ପିତା ମାତ୍ର    ତାଡ଼ନ୍ତି ନିଜ ଶିରେ ହସ୍ତ ।
ଦଇବ କରିଅଛି ଏହା    ଅମ୍ଭରେ ନାହିଁ ତାର ଦୟା ।

ନନ୍ଦର ଘରେ ଲୁଚାଇଲୁ    ଏବେ କଂସର ମୁଖେ ଦେଲୁ ।
ବିଧାତା କରିଛି କଷଣ    ଦେଖିବୁଁ ପୁତ୍ରଙ୍କ ମରଣ ।

ଦେବକୀ ପୁତ୍ରମୁଖ ଚାହିଁ    ନେତ୍ର ଦ୍ୱୟରୁ ଅଶ୍ରୁ ବହି ।
ଭୂଇଁଲମହା ଶୋକଜଳେ    ଧରିଛି ବସୁଦେବ କୋଳେ ।

ମନୁଷ୍ୟ ମଣି କଲେ ଭ୍ରାନ୍ତ    ପୁତ୍ରଙ୍କ ବଳ ନ ଜାଣନ୍ତି ।
ମାଲଙ୍କ ତୁଲେ ଦୁଇ ବାଳେ    ଯୁଦ୍ଧ କରନ୍ତି କୋପାନଳେ ।

କୃଷ୍ଣର ମୁଷ୍ଟି ବଜ୍ର ପ୍ରାୟେ    କମ୍ପଇ ଚାଣୂରର କାୟେ ।
ମୂର୍ଚ୍ଛିତ ହୋଇ ମହାବଳୀ    ମୁଖରୁ ରୁଧିର ନିକଳି ।

ପୁଣି ଉଠିଲା ଜ୍ଞାନ ପାଇ    ଧାଇଁଲା ମୁଥେଇ ଉଞ୍ଚାଇ ।
କୃଷ୍ଣର ହୃଦରେ ପ୍ରହାର    ଗର୍ଜ୍ଜଇ ମହାନାଦ କରି ।

ଚାଣୁର ମୁଷ୍ଟି ପଡ଼ ହୃଦେ | ଗୋବିନ୍ଦ ନ ଘୁଞ୍ଚିଲେ ପାଦେ ।
ଫୁଲ ପେଣ୍ଡାଏ କରେ ଧରି | ଗଜ ଶରୀରେ ପେଲ୍ଲେ ମାରି ।

ଚାଣୁର କର କୃଷ୍ଣ ଧରି | ଘୁରାଇ ଅନ୍ତରାଳ କରି ।
ଭୂମିରେ ପଡ଼ିଲେ ତକ୍ଷଣ | ଚାଣୁର ଛାଡ଼ିଲା ଜୀବନ ।

ଇନ୍ଦ୍ରର ଧ୍ୱଜ ପ୍ରାୟେ ପଡ଼ି | ଗୋବିନ୍ଦ କଲେ ଘୋର ରଡ଼ି ।
ଉଠିଲେ ଚାଣୁର ଉପରେ | ଅଳପ କେଶ ଧରି କରେ ।

କୃଷ୍ଣଙ୍କୁ ଚାହିଁ ବଳରାମ | ଦେହେ ବଢ଼ିଲା ଗରୁ ତମ ।
ବଜ୍ର ମୁଷ୍ଟିଏ ପ୍ରହାରିଲେ | ମୁଷ୍ଟିକ ମୁଣ୍ଡ ଚୂର କଲେ ।

ମୁଖରୁ ରୁଧିର ଗଳଇ | ପଡ଼ିଲା ମୃତପିଣ୍ଡ ହୋଇ
ପବନଘାତେ ମହାବୃକ୍ଷ | ଯେସନେ ପଡ଼ଇ ପ୍ରତ୍ୟକ୍ଷ ।

ମାଲେକ କୂଟ ନାମେ ଥିଲା | ରାମର ନିକଟେ ମିଳିଲା ।
ବାମ ମୁଷ୍ଟିରେ ମୁଣ୍ଡ ଚୂରି | ପଡ଼ିଲା କରି ନାଦ ଘୋର ।

ଶଲ ତୋଶଳ ମାଲ ଦୁଇ | ମିଳିଲେ କୃଷ୍ଣ ପାଶେ ଯାଇ ।
ପାଦ ପ୍ରହାରିଲେ ମୁରାରି | ମାଲେ ପଡ଼ିଲେ ନାଦ କରି ।

ଆଉ ଯେତେକ ମାଲ ଥିଲେ | ରଣ ଉପେକ୍ଷି ପଳାଇଲେ ।
ମାଲେ ପଳାନ୍ତେ ବେନି ଭାଇ | ଡାକନ୍ତି ରହ ରହ ଭାଇ ।

ଗୋପକୁମରେ ଥିଲେ ସଙ୍ଗେ | ମିଳିଲେ ରାମ କୃଷ୍ଣ ଆଗେ ।
ମାଲ ଶବ୍ଦାଣ ଗରୁଡ଼ର | ଭୂମି କମ୍ପଇ ଥରହର ।

କୃଷ୍ଣର ମାଲଯୁଦ୍ଧ ଦେଖି | ଅସୁରେ ଗୃହାନ୍ତି ନରେଖି ।
କୃତାନ୍ତ ପ୍ରାୟେ ରୂପ ଦେଖି | ଡରେ ବୁଜିଲେ ବେନି ଆଖି ।

କମ୍ପଇ କଂସର ଶରୀର | ଦେଖି ହରଷ ସୁର ନର ।
ବୋଲନ୍ତି କୃଷ୍ଣ ସାଧୁ ସାଧୁ | ତରିଲେ ମାଲଙ୍କ ପ୍ରମାଦୁ ।

କୃଷ୍ଣର ଚରଣେ ନୁପୁର  ଶୁଭନ୍ତେ ବାଜଇ ସୁନ୍ଦର ।
ବାଜଇ ବୀର ତୁର ଧ୍ୱନି  ସ୍ତୁତି କରନ୍ତି ସୁର ମୁନି ।
ପଡ଼ିଅଛନ୍ତି ଶୁଣ୍ଠ ମାଲେ  ସକଳେ ଭୟେ ପଳାଇଲେ ।
ଦେଖିଣ ଉଗ୍ରସେନ ବଳା  ବାଦ୍ୟ ଶବଦ ରୁନ୍ଧାଇଲା ।

କୋପେ ବୋଲଇ ଶିର ଧୁଣି  କରେ ଖଡ଼ଗ ଅଛି ଘେନି ।
ବସୁଦେବର ପୁତ୍ର ଦୁଇ  ରାଜ୍ୟ ବାହାରେ ଥୁଅ ନେଇ ।
ନନ୍ଦସମ୍ପଦ ଗୋପପୁର  ବନ୍ଧନ କର ଯାଇ ଜୁର ।
ନନ୍ଦ ବସୁଦେବଙ୍କୁ ନିଅ  ଶିର ଛେଦାଇ ଶୂଳ ଦିଅ ।

ଦେବକୀ ଉଗ୍ରସେନ ମୂଳେ  ଶୁଣନ୍ତେଁ ବସିଥିବେ ଶୂଳେ ।
ରାମ କୃଷ୍ଣଙ୍କୁ ଧରି ନିଅ  ତାହାଙ୍କ ମରଣ ଦେଖାଅ ।
ଶିର ଛେଦିବ ଏହାଙ୍କର  ତେବେ ଯେଁ ଶତ୍ରୁ ଯିବ ମରି ।
ଯେତେ ଗୋପାଳପୁଅ ସଙ୍ଗେ  ହାଣି ପକାଅ ଯାଇ ବେଗେ ।

ଏମନ୍ତ କଂସମୁଖୁ ଶୁଣି  କୋପେ ଶୁଣ୍ଢିଲେ ଚକ୍ରପାଣି ।
କଂସର ମଞ୍ଚାରେ ଉଠିଲେ  ସ୍ୱର୍ଗେ ଯେ ଦେବଗଣେ ଥିଲେ ।
ଦେଖି କରନ୍ତି ଜୟ ଜୟ  ଅବନୀ ହୋଇଲା ନିର୍ଭୟ ।
କୃଷ୍ଣଙ୍କୁ ଦେଖି କଂସ ଉଠି  ଖଡ଼ଗ ବଳା ଦୃଢ଼ ମୁଷ୍ଟି ।

ଉଞ୍ଚାଇ ଗୋବିନ୍ଦ ଉପରେ  ଡେଇଁ ପଡ଼ନ୍ତେ ରୋଷଭରେ
ଛଞ୍ଚାଣ ପ୍ରାୟେ ଧାଡକାରେ  କେଶ ଧଇଲେ ପ୍ରଭୁ କରେ ।
ଅସୁର ନ ପାରିଲା ଚଳି  କୃଷ୍ଣଙ୍କୁ ଶୁଣ୍ଢିଲା ନିଗ୍ରେଳି ।
ଚକ୍ଷୁର ବାଟେ ପ୍ରାଣ ଗଲା  କୃଷ୍ଣର ଶରୀରେ ପଶିଲା ।

ନାଗ ଅବୋରି ଖଗପତି  ତେସନ ଗୋବିନ୍ଦର ଗତି ।
ରତ୍ନମୁକୁଟ କଂସ ଶିରେ  କୃଷ୍ଣ ଝିଙ୍କିଲେ ରୋଷଭରେ ।
କଂସକୁ ଧରି ବାମ କରେ  ଗୋବିନ୍ଦ ମଞ୍ଚାରୁ ଉପରେ ।

ଜଗତସ୍ୱାମୀ ପୋଗବଳେ	ପଡ଼ିଲେ ରଙ୍ଗସଭା ତଳେ ।
କଂସ ଉପରେ ଦାମୋଦର	ମେଦଗା ଦଣଇ ସୁନ୍ଦର ।

ଯେତେ ଅସୁର ରଜା ଥିଲେ	କୃଷ୍ଣଙ୍କୁ ଦେଖି ପଳାଇଲେ ।
ସମସ୍ତ ଲୋକେ ଛନ୍ନ ଗୃହି	ବକ୍ରମ ଝିଦ ପ୍ରାପ୍ତ ହୋଇ ।

କଂସର କେଶ ଧରି କରେ	କୃଷ୍ଣ ଝିଙ୍କିଲେ ବେଗଭରେ ।
ରଙ୍ଗେଶ୍ୱର ତଳେ ଯାଇ	ମୃତପିଣ୍ଡକୁ ଘୋଷଡ଼ାଇ ।

ଜଗନ୍ନ କରି ପକାଇଲେ	ଗୋପବାଳକେ ଡେଇଁଗଲେ ।
ଲୋକେ କରନ୍ତି ହାହାକାର	କେ ବୋଲେ ପଡ଼ିଲା ଅସୁର ।

ଦେଖି ସାନନ୍ଦ ପୁରଜନ	ମଥୁରା ସ୍ତ୍ରିଶ୍ୱଙ୍କର ମନ ।
ଆକାଶୁ କୁସୁମ ବରଷି	ନିର୍ମଳ ଦଶ ଦଗ ଦଶି ।

ପବନ ବହଇ ଶୀତଳ	ଧର୍ଭିତ୍ୟେ ଜଳଇ ଅନଳ ।
ଆକାଶ ଦଶଇ ସୁନ୍ଦର	ଖଣ୍ଡିଲା ଅବନୀର ଭାର ।

ଜୟ ଶବଦ ଶୁଭେ ପୁରେ	ନୃତ୍ୟ କରନ୍ତି ଅପସରୀ ।
ଗୀତବନୋଦେ ବଦ୍ୟାଧର	ଦୁନ୍ଦୁଭି ବାଜଇ ସୁସ୍ୱର ।

ଦଇବେ କଂସ ଅବରତେ	କୃଷ୍ଣଙ୍କୁ ଭୟ କରି ଚତ୍ତେ
ଜଳ ପିବନ୍ତେ କମେ ଦେଖି	ଭୋଜନ କରନ୍ତେ ଡରଇ ।

ଭୟେ ନ ସ୍ଫୁରଇ ବଚନ	ନିଦ୍ରା ନ ମାଡ଼ଇ ନୟନ ।
ଯାହାକୁ ଡରୁଥାଇ ନତ୍ୟେ	ପ୍ରତ୍ୟକ୍ଷେ ଦେଖିଲା ଅଗ୍ରତେ ।

ଦେହେ ପଶିଲା କଂସରାୟ	ଖଣ୍ଡିଲା ଜନ୍ମ ମୃତ୍ୟୁ ଭୟ ।
ନିର୍ମଳ ଯୋଗୀଙ୍କି ଦୁର୍ଲଭ	କଂସକୁ ହୋଇଲେ ସୁଲଭ ।

କଂସର ଅଷ୍ଟ ଭ୍ରାତ ଥିଲେ	ମିଳଲେ ରାମ କୃଷ୍ଣ ଭୁଲେ ।
ଙ୍କ ନ୍ୟଗ୍ରୋଧ ଆଦ କରି	ଧାଇଁଲେ ଖଡ଼ଗ ଉଭାରି ।

ଭାଇ ମରଣେ କ୍ରୋଧ ପାଇ   ବେଢ଼ିଲେ ଗୋବନ୍ଦକୁ ଯାଇ ।
ଦେଖି ଧାଇଁଲେ ହଳଧର   ବୁଲାଇ ଲୌହର ମୁଦ୍ଗର ।

ସିଂହ ଯେସନେ ହସ୍ତିଯୂଥେ   ପିଟନ୍ତି ଅତି ବଳବନ୍ତେ ।
ପଡ଼ିଲେ ଅଷ୍ଟ ମହାସୁର   ମୁଖରୁ ଗଳଇ ରୁଧିର ।

ଦେଖି ସାନନ୍ଦ ଦେବଗଣ   ବଳଦେବଙ୍କ ବୀରପଣ ।
ପୁଷ୍ପ ବରଷି ସ୍ତୁତି କର   ଜୟ ଶବଦ ନର ନାରୀ ।

କଂସର ଅଷ୍ଟ ଭ୍ରାତ ମଲେ   ଯେତେ କାମିନୀ ପୁରେ ଥିଲେ
ବାହାର ହୋଇଲେ ସକଳେ   କାନ୍ଦନ୍ତି ସ୍ୱାମୀ ଧରି କୋଳେ ।

ମୁଣ୍ଡେ ହୃଦୟେ କର ତାଡ଼ି   ପଡ଼ନ୍ତି ମହୀତଳେ ବୁଡ଼ି ।
ହା ନାଥ ପ୍ରିୟ ମହୀପତି !   ଅନାଥ ହୋଇଲୁଁ ଯୁବତୀ ।

ହେ ନାଥ ! ମରଣେ ତୋହର   ମଥୁରା ନ ଦିଶେ ସୁନ୍ଦର ।
ତୋର ବିୟୋଗେ ମଧୁପୁରୀ   ଏବେ ହୋଇଲା ହତଶିରୀ ।

ତୁ ନାଥ ପ୍ରାଣୀଙ୍କର ଭୁଲେ   ଦ୍ରୋହ କଲୁ ସର୍ବକାଳେ ।
ଅସୁର ବୁଦ୍ଧି ତୋର ମନ୍ଦ   ସାଧୁଙ୍କ ସଙ୍ଗେ କଲୁ ଦ୍ୱନ୍ଦ ।

ଧର୍ମକୁ ନଷ୍ଟ୍ୟ ଛଡ଼ିଲୁ   ବାଳକହାତେ ପ୍ରାଣ ଦେଲୁ ।
ପ୍ରାଣୀଙ୍କ ହୃଦୟେ ଅନନ୍ତ   ଜଗତ ଯାର ଗର୍ଭଗତ ।

ବ୍ରହ୍ମାଣ୍ଡଠାକୁର ମୁରାରି   ମାରଇ ପ୍ରାଣୀ ହିଂସାକାରୀ ।
ତାହାର ସଙ୍ଗେ ବାଦ କଲୁ   ଇତର ପ୍ରାୟେ ତୁ ମଣିଲୁ ।

ସୃଷ୍ଟି ପାଳନ ଯାର ବାନା   ଭକତ ଜନ ବଜ୍ରସେଷ୍ଟା ।
ସଂସାରେ ଧର୍ମ ରୂପ ହୋଇ   ଭବ ଅଭବ ସେ ଦେଖଇ ।

ତାର ମହିମା ତୁ ନ ଜାଣି   ଦ୍ରୋହ କଲୁ ଚକ୍ରପାଣି ।
ମରିବା ଉଚିତ ତୋହର   ଅନାଥ କଲୁ ମଧୁପୁର ।

କହନ୍ତି ବ୍ୟାସଙ୍କ ନନ୍ଦନ ଗୋବିନ୍ଦ ଶୁଣିଲେ ବେଦନ ।
ଛାଡ଼ିଲେ କଂସେ ପ୍ରେମମନ ଦୟାସାଗର ଭଗବାନ ।
ରାଜକାମିନୀ ମଧ୍ୟେ ଯାଇ ବିଜୟେ ବ୍ରହ୍ମାଣ୍ଡଗୋସାଇଁ ।
ଲୋକ ବେଭାରେ ନରହରି ଲୋଚନୁ ବର୍ଷେ ଅଶ୍ରୁ ବାରି ।
କାନ୍ଦନ୍ତି ମାଈଁଙ୍କର ମେଳେ ଗୋବିନ୍ଦ ମାୟା ଯୋଗବଳେ ।
ବୋଲନ୍ତି ମୋର କର୍ମ ମନ୍ଦ ଦଇବ କରିଅଛି ଛନ୍ଦ ।
ଜାତ ହୋଇଲି ବନ୍ଦିଘରେ ପିତା ମୋ ନେଲେ ଡରେ ।
ଗଜପୁରଣେ ଧନ ନେଇ ମୋହର କୁଳମୂଳ ନାହିଁ ।
ସେବକ ପ୍ରାୟେ ନନ୍ଦଘରେ ଗୋରୁ ଚରାଏ ବନଘୋରେ ।
ଦିବସେ ନ ରହୁନା ଘରେ ଅନ୍ନ ପୁଡ଼ାଏ ଧେନୁ କରେ ।
ରାତି ପାହିଲେ ବନେ ଯାଇ ଏମନ୍ତେ ଜୀବନ ପୋଷଇ ।
ଯେତେ ପଢ଼ିଲି ଶାସ୍ତ୍ର ମୋତେ ସୁମରି କହିବଇଁ କେତେ ?
ମୁଁ ମୋର ଦୁଃଖସୁଖେ ଥାଇ ମଉଳା ତାହା ନ ଜାଣଇ ।
ମାଇଲ ମୋର ଷଡ଼ ଭାଇ ପିତା ମାତାଙ୍କୁ ଦୁଃଖ ଦେଇ ।
ମୋତେ ମାରିବ ବୋଲି କଲା ଅକ୍ରୂର ହାତେ ଆଣାଇଲା ।
ଧନୁଯାତ୍ରାଏ ମିଛେ କଲା ଦ୍ୱାରେ ଗୋ ହସ୍ତୀଏ ଥୋଇଲା ।
ଦଇବେ ତହୁଁ ଉବୁରିଲି ମାମୁଙ୍କ ଛାମୁରେ ମିଳିଲି ।
ତେବେହେଁ ଦୟା ଗୋ ନ କଲା ମାଲଙ୍କ ହାତେ ଯୁଝାଇଲା ।
ତହୁଁ ଜୀଇଲି କର୍ମବଳେ ମିଳିଲି ଯାଇ ମଞ୍ଚାତଳେ ।
ବୋଇଲା କୋପଭର ହୋଇ ତଡ଼ାଇଦିଅ ବେନି ଭାଇ ।
ବସୁଦେବଙ୍କୁ ନନ୍ଦ ସଙ୍ଗେ ହାଣିପକାଅ ନେଇ ବେଗେ ।
ଦେବକୀ ସଙ୍ଗେ ଉଗ୍ରସେନ ଶୂଳରେ ବସାଅ ବନ୍ଧନ ।

ନନ୍ଦସମ୍ପଦ କରି ଜୁର — ରାମଗୋବିନ୍ଦେ ପଛେ ମାରି ।
ତା ଶୁଣି ଉଠିଲି ମଞ୍ଚାରେ — ତା କୋପ ଶାନ୍ତ କରିବାରେ ।

ପାଦେ ପଡ଼ିଲି ମୁହିଁ ଯାଇ — ଧାଇଁଲା ଖଡ୍ଗ ଉଞ୍ଚାଇ ।
ତା ଦେଖି ହୋଇଣ ବିକଳ — ବେଗେ ଧରିଲା ମୋର ବାଳ ।

ମଞ୍ଚାରୁ ଦେଲା ଫୋପାଡ଼ାଇ — ତଳେ ଗୋ ପଡ଼ିଥିଲି ମୁହିଁ ।
ବିକଳେ ଧରିଲି ପୟର — ପଡ଼ିଲା ମୋହର ଉପର ।

ମଞ୍ଚାରୁ ପଡ଼ି ମାମୁଁ ମଲା — ମୋତେ ଗୋ ଦଇବ ରଖିଲା ।
ମୋହର କର୍ମେ ନାହିଁ ଭୋଗ — ରାଜା-ଭଣଜାପଣେ ଯୋଗ ।

ଅର୍ଜି ମୁଁ ଥିଲି ଯାହା ପୂର୍ବେ — ଫଳିଲା ମୋତେ ଆସି ଏବେ ।
ମାୟାସଂସାର ଏହିମତେ ॰ — ଜନ୍ମ ମରଣ ବେନି ପଥେ

ପ୍ରାଣୀ ହୁଅନ୍ତି ଆତଯାତ — କର୍ମର ଫଳେ ସେ ପ୍ରାପତ ।
ପଥିକ ପଥଶ୍ରମ ପାଇ — ବସନ୍ତି ବୃକ୍ଷତଳେ ଯାଇ ।

ଶ୍ରମ ସାରିଲେ ଯେଉଁମତେ — ଚଳନ୍ତି ବୃକ୍ଷ ଥାଇ ପଥେ ।
ତେମନ୍ତ ପ୍ରାୟେ ଜନ୍ତୁ ମିଳି — ମାୟାସଂସାରେ ବସ୍ତୁ କେଳି ।

ଏଣେ ଯେ ନ କରନ୍ତି ଖେଦ — ତାହାଙ୍କୁ ନ ଲାଗେ ପ୍ରମାଦ ।
ତୁମ୍ଭେ ଗୋ ଅର୍ଜିଅଛ ଯାହା — ଏବେହେଁ ଭୁଞ୍ଜିବ ନା ତାହା ।

ଏମନ୍ତ ବୋଲି ଭଗବାନ — ମୋହିଲେ ମାଉଁଙ୍କର ମନ ।
ଆଶ୍ୱାସ କରି କଂସନାଶୀ — ବଦନ ପୋଛିଲେ ମୁରାରି ।

ଜଣ ଜଣଙ୍କେ ବୋଧ କଲେ — ଅନଳେ କଂସ ପୋଡ଼ାଇଲେ ।
ରାମ ଗୋବିନ୍ଦ ବେନି ଭାଇ — ପିତା ମାତାଙ୍କ କଷ୍ଟ ଚାହିଁ ।

ନୟନୁଁ ଅଶ୍ରୁଜଳ ବହି — ମଞ୍ଚା ଉପରେ ବେନି ଭାଇ ।
ଚରଣୁ ବନ୍ଧନ ଫେଡ଼ାଇ — କହନ୍ତି ବଚନ ବିନୟି ।

ଦେବକୀ ବସୁଦେବ ପାଦେ   ପଡ଼ିଲେ ଶୋକ ଗଦଗଦେ ।
ଦେଖି ଚକିତ ପିତା ମାତ   ତୋଳି କରାଇ ଗୋପୀନାଥ ।

ଭୟେ କମ୍ପନ୍ତି ଥରହର   ବୋଲନ୍ତି ଶରଣ ତୋହର ।
ଅନାଦି ନାଥ ନିରଞ୍ଜନ   ଅମ୍ଭର ଦୋଷ ନ ଘେନ ।

ପୁତ୍ର ପ୍ରାୟେକ ତୋତେ ମଣି   ଯାହା ଚିନ୍ତିଲୁ ଚକ୍ରପାଣି ।
ଏ ଦୋଷ ନ ଘେନ ଅମ୍ଭର   ଶରଣ ରଖ ଚକ୍ରଧର ।

ଏମନ୍ତ ବୋଲି କମ୍ପେ କାୟେ   ଚକ୍ଷୁ ବୁଜିଲେ ମହାଭୟେ ।
ବୋଲନ୍ତି ଶୁକ ମୁନିବର   ଶୁଣ ହୋ କୁଷ୍ଟର ବଗୁର ।

ବଳଦେବଙ୍କୁ ଅନାଇଲେ   ବୋଇଲେ ଜନ ଏ ପାଇଲେ ।
ଅମ୍ଭଙ୍କୁ ଚିହ୍ନିଲେ ଏ ଅଜ୍ଞ   କେମନ୍ତେ ହେବ ଦେବକାର୍ଯ୍ୟ ?

ଏମନ୍ତ ବୋଲି ବିଚାରିଲେ   ବିଷ୍ଣୁ ମାୟାକୁ ପ୍ରକାଶିଲେ ।
ପିତା ମାତାଙ୍କ ଦେହେ ଯାଇ   ପଶିଲେ ଶୋକମୋହ ହୋଇ ।

ସେ ମାୟାଧରପାଦଗତେ   ଭଜଇ ବିପ୍ର ଜଗନ୍ନାଥେ ।
କଂସ ଦାନବ ସଂହାରିଲେ   ଅବନୀଭାର ନିବାରିଲେ ।

ଭକତ ଜନଙ୍କର ବନ୍ଧୁ   ନାମ କରୁଣାମୟସିନ୍ଧୁ ।
ଏଣେ ନିବେଶି ହୃଷ୍ଟମନ   ଶରଣ ପଶ ଭଗବାନ ।

ବୁଡ଼ି ନ ମର ଭବଜଳେ   କୃଷ୍ଣ ସୁମର ଉଠ କୂଳେ ।
ବ୍ରାହ୍ମଣକୁଳେ ଜାତ ହୋଇ   ବିଷ୍ଣୁ ବାସନା ମୋର ନାହିଁ ।

ସ୍ୱପନେ କହିଲେ ମୁରାରି   ପୁରାଣ ଗୀତ ନାଦ କରି ।
ଏଣୁ ମୋହର ଭୟ ନାହିଁ   ସୁଜନେ ତର ଏହା ଗାଇ ।

# କଂସସଭା

## ✓ ଅଚ୍ୟୁତାନନ୍ଦ ଦାସ

କବି କଟକ ଜିଲ୍ଲା ଅନ୍ତର୍ଗତ ନେମାଳ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ଜାତୀୟ ଉପାଧି ଖୁଣ୍ଟିଆ ଥିଲା । ରଣପୁରର ତଦାନୀନ୍ତନ ରଜା ପଦ୍ମନାଭ ନରେନ୍ଦ୍ର କବିଙ୍କର ପୃଷ୍ଠପୋଷକ ଥିଲେ । କବି ଜଣେ ଯୋଗସାଧକ ବୈଷ୍ଣବ ଥିଲେ । ସେ ନେମାଳ, ସାଇଲେ ପ୍ରଭୃତି ବିଭିନ୍ନ ସ୍ଥାନରେ ବିଭିନ୍ନ ସମୟରେ ଅବସ୍ଥାନ କରିଥିଲେ । ଅଚ୍ୟୁତାନନ୍ଦ ହରିବଂଶ, ଗୋପାଳଙ୍କ ଓଗାଳ ଓ ଲହୁଡ଼ିଖେଳ, ସଂପ୍ରାଭାଗବତ, ଅନନ୍ତଗୋଇ, ଜ୍ଞାନୋଦୟ କୋଇଲି, ଛତିଶଖଣ୍ଡ ସଂହିତା, ଅଠସ୍ତର ଖଣ୍ଡ ଗୀତା ଓ ଅନେକଗୁଡ଼ିଏ ମାଳିକା ରଚନା କରିଥିଲେ । କବି ଉତ୍କଳର ପଞ୍ଚସଖାଙ୍କ ମଧ୍ୟରେ ଏକତମ ।

ଶୁକ ବୋଇଲେ ଭୋ ରାଜା — ସାବଧାନେ ଶୁଣ
ଏଥି ଉତ୍ତାରେ ଯେମନ୍ତେ — କଲା କଂସରାଣ ।
ବ୍ରଣକାମାନଙ୍କୁ ବଧ — କରି କଂସ ବୀର
ଶତ୍ରୁ କ୍ଷୟ ଗଲା ବୋଲି — ହରଷ ଅପାର ।
ଦିନେ କଂସ ରାଜା ଶମ— — ଦଣ୍ଡକୁ ଅଣାଇ
ସଭା ଆସ୍ଥାନରେ ବସେ — କଲା ନରସାଇଁ ।
ପାତ୍ର ମନ୍ତ୍ରୀ ପୁରୋହିତ — ଆଦି ବନ୍ଧୁଜନ
ଭାଇ ବନ୍ଧୁ ସହୋଦର — ସକଳ ସଇନ୍ୟ
ଅଷ୍ଟ ମଲ୍ଲ ଆଦି କରି — ସୁନାସ ସହିତେ
ସଖା ଅମାତ୍ୟ ବପୋଇ — କରଣଙ୍କି ଯେତେ

ସନ୍ନିଧେ ବସାଇ ସଭା — କରି ନୃପମଣି
କରେ ଖଡ଼ଗ ଧରଣ — ଝମକାଇ ପୁଣି
ବୋଇଲା ନାରଦ ଯାହା — କହିଗଲେ ମୋତେ
ନରତେ ମୁହିଁ ସେ କଥା — ଧରିଥାଇଁ ଚିତ୍ତେ ।
ମୋହର ଭଗ୍ନୀ ଦେବକୀ — ନାମେ ଯେଉଁ ନାରୀ
ଅଠ ପୁତ୍ର ହେବ ବୋଲି — ଅଛି ସତ୍ୟ କରି ।
ଅଠ ଭଣଜା ମୁଁ ବଧି— — ଘାରେ ଯେବେ ଧରି
କେହୁ ମୋତେ ସରି ।
ଦେବ ଦାନବେ ନୋହିବେ — ହେବ ମୋର ଦେଖି
ଯୁଗେ ଯୁଗେ ଅଜ୍ରାମର
ଏମନ୍ତ ବୋଲି ନାରଦ — ମୁନି ଗଲେ କହି ।
ଏବେ ତାର ଷଡ଼ ପୁତ୍ର — ଅମ୍ଭେ କଲୁଁ କ୍ଷୟ
ଆଜ ବେନି ପୁତ୍ର ମାରି — ହୋଇବୁଁ ନିର୍ଭୟ ।
ଉଗ୍ରସେନ ବଇ ଅଙ୍କ — ଦେଲ୍ଲ ନୃପବର
ଭୋ ପିତା ଏ କଥାରେ ତ — ପ୍ରତେ ନାହିଁ ମୋର ।
ଯେବେ ପିତା ତୋର ମୋତେ — ଅଛଇ ସୁଦୟା
ଯେତେନେ ଜଗିଥିବୁ ନ — କରି ମୋତେ ମାୟା ।
ତୁମ୍ଭେ ପିଅର ପରମ— — ଗୁରୁ ଯେ ଦେବତା
ଯଦ୍ୟପି ତବ ଚରଣେ — ସେବା ମୋର ପିତା ।
ଅନୁଗ୍ରହ ଯେବେ ତୋର — ଅଛି ଦେବ ସ୍ୱାମି ।
ଝିଅ ନାଇଁଙ୍କ ସ୍ନେହରେ — ନ ହୁଅ ତୁ ଭ୍ରମ ।
ପୁତ୍ରହତ୍ୟାରେ ଲଗିବ — ତୋତେ ମହାପାପ
ଉଗ୍ରସେନ ବୋଲେ ଶୁଣି — ବଢ଼ୁଛୁ ସନ୍ତାପ ।
ତୁ ମୋହର ପଞ୍ଚଭୂତ — ଅସ୍ୱାକୁ ଯେ ସାହା
ଅଶ୍ରା କରିଅଛୁ ବାବୁ — ତୋର ଦୁଇ ବାହା ।

ଏ ଯଦୁ ଭୋଜବଂଶର	ଚନ୍ଦ୍ରମା ତୁ ବାବୁ
ଅନେକ ପୁଣ୍ୟେ ପାଇଛୁ	ପୁତ୍ର ତୁ ମୋ ସବୁ ।
ଏ ତୋର ପ୍ରସାଦେ ଅମ୍ଭେ	ରାଜରାଜେଶ୍ୱର
ସପତଦ୍ୱୀପା ପୃଥ୍ୱୀର	ଅଟଇ ଠାକୁର ।
ଏକା ଏ ମଥୁରା ରାଜ୍ୟେ	ମୁଁ ଥିଲା କାରେଣି
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ତୁ	ହେଲୁ ନୃପମଣି ।
ସକଳ ଦେବତା ତୋତେ	କରନ୍ତି ସମ୍ମାନ
ଏହାକୁଁ ଅର୍ଜିବ ଅନ୍ୟ	କହ କେଉଁ ପୁଣ୍ୟ ?
ନଷ୍ଟିନ୍ତ ହୋଇଲ ଏବେ	ତୋର ପରସାଦେ
ପୂର୍ବର ମୋ ତପ ସିଦ୍ଧ	ହୋଇଲାକ ଏବେ ।
ତୋ ପରି ପୁତ୍ର କ ବିନା	ତପେ ଅର୍ଜି ପାରି
ତ୍ରଇଲୋକ୍ୟ ଭିତରେ ତୁ	ଏକା ଦଣ୍ଡଧାରୀ ।
ଯେବେ ମୋର ଅନ୍ତର୍ଗତେ	ଥିବ ତୋତେ ମାୟା
ରଜ୍ଜରବ ନରକରେ	ପଡ଼ିବ ମୋ କାୟା ।
ବାବୁ ତୋ ଜୀବନ୍ତେ ମୋର	ସବୁ ସୁଖ ଅଛି
ତୋରଅଭାବେ ଅମ୍ଭର	କାହିଁ ନାହିଁ କିଛି ।
ପିତାର ଛାମୁରେ ଯେବେ	ପୁତ୍ର ହୋଏ ଦକ୍ଷ
ସଂସାରଭିତରେ ନାହିଁ	ତାର ସମକକ୍ଷ ।
କଂସ ବୋଲଇ ଭୋ ତାତ	ତବ ପରସାଦେ
ଅନ୍ୟ ପରମାଦ ମୋତେ	ନାହିଁ କାହିଁ ହାଦେ
ଏକାମାତ୍ର ଏକ କଥା	ହୋଇଛି ଅସାଧ
ଦେବକୀପୁତ୍ର କରିବ	ମୋତେ ପ୍ରାଣେ ବଧ
ନାରଦ ମହାମୁନି ଯେ	କହୁଛନ୍ତି ମୋତେ
ଦେବକୀ ଅଷ୍ଟମ ପୁତ୍ର	ମାରିବଟି ତୋତେ ।

ତୁମ୍ଭ ବିନା ଆନକୁ ମୋ  ପ୍ରତେ ନାହିଁ ତାତ
ତେଣୁ ପଚୃର ବଚୃର  କହଇ ତୁମ୍ଭନ୍ତ ।
ଏବେ ଏ ବେନି ପୁତ୍ରଙ୍କୁ  ଦୃଢ଼ କରି ରଖ
ଏହା ନିବାରି ପାରିଲେ  ପ୍ରତିଜ୍ଞା ମୋ ଦେଖ ।
ସକଳ ବ୍ରହ୍ମାଣ୍ଡ ସାଧି  କରିବି ସମରେ
ଇନ୍ଦ୍ରଆଦି ଦିଗପାଳ  ନ ଥିବେ ସ୍ୱର୍ଗରେ ।
ସକଳ ଦେବତାଙ୍କୁ ମୁଁ  ଦେବଇଁ ଘଉଡ଼ି
ବଳେ ସୁରସିଂହାସନ  ବସିବଇଁ ମାଡ଼ି ।
ଏ ମର୍ତ୍ତ୍ୟମଣ୍ଡଳେ ତାତ  ହେବୁ ମହାରାଜା
ଦିଗପାଳ ସମାନେ ତୁ  ପାଇଥିବୁ ପୂଜା ।
ଯେବେ ଜାଣ ଏ ବଚନ  ଗୋଷ୍ଠୀ ଲଙ୍ଘିବଇଁ
ମୋ ପିତା ତୋହର ପାଦେ  ଦୋରେହା ହେବଇଁ
ଏତେ ବୋଲି ପିତାପାଦେ  ନମସ୍କାର କରି
ବାହୁଡ଼ି ଅନ୍ତଃପୁରକୁ  ଗଲା ଦଣ୍ଡଧାରୀ ।
କଂସ ଉଠିଯାନ୍ତେ ସଭା  ଗୋଷ୍ଠୀ ମଜ୍ଜିଲା
ଯେ ଯାହାର ପୁରକୁ ତ  ସୁଖେ ଚଳିଗଲା ।
କଂସର ପ୍ରତାପପଣ  ଜଗତେ ବିଖ୍ୟାତ
ବଦନ୍ତି ଶୁକମୁନି  ଶୁଣ ପରୀକ୍ଷିତ !
ଶ୍ରୀହରିବଂଶ ପୁରାଣ  ଯାକ ପୁଣ୍ୟମୟେ
କଷମେ ଦଶମ ଅଧ୍ୟା  ସମାପତ ହୋଏ ।
ବନ୍ଦଇ ଶ୍ରୀ ବେଦବ୍ୟାସ  ପରମ ଈଶ୍ୱର
ଅଠର ଖଣ୍ଡ ପୁରାଣ  ଅଙ୍କରେ ଯାହାର ।
ଶୋଭିତ କୃଷ୍ଣ ପିଙ୍ଗଳ  ଜଟା ଯାର ମାଥେ
ପଞ୍ଚମୁଦ୍ରା ବ୍ରହ୍ମଦଣ୍ଡ  ଶୋଭିତ ଯା ହସ୍ତେ ।

କପିଳାମଳ ବିଭୂତି          ଭୂଷଣ ଯା ଅଙ୍ଗ
ଭ୍ରମନ୍ତ ଅନେକ ଶିଷ୍ୟ          ସଦା ଯାର ସଙ୍ଗ ।
ମର୍କତ କୁଣ୍ଡଳ ବେନି          ଶୋଭେ ଗଣ୍ଡସ୍ଥଳେ
ମଧ୍ୟାହ୍ନ ଆଦିତ୍ୟ ଜ୍ୟୋତି          ବଦନମଣ୍ଡଳେ ।
କଟିତଟେ ଶୋଭି ଯାଏ          ସରୁ ଝୀନବାସ
ଅଶେଷ ବ୍ରହ୍ମାଣ୍ଡ କଥା          ଯାର ଗର୍ଭେ ବାସ ।
ପରମପଣ୍ଡିତ ସ୍ୱାମୀ          ଶୋଭି ଅନୁପମ
ବେଦ ଭାଗ କରି ବେଦ—          ବ୍ୟାସ ଯାର ନାମ ।
ଅନନ୍ତ କୋଟି ବିଦ୍ୟାର          ସନ୍ଧି ସିସ ବିଧି
ସକଳ ଗ୍ରନ୍ଥମାନଙ୍କୁ          ଅଛ ତୁମ୍ଭେ ସାଧି ।
ଷାଠିଏ କୋଟି ଯେ ଗ୍ରନ୍ଥ          ମୁଖେ ବଖାଣିଲ
ସକଳ ଶାସ୍ତ୍ର ପୁରାଣ          ସ୍ୱଇଚ୍ଛାରେ କଲ ।
ସ୍ୱାମି ଯେ ବିଦ୍ୟା ନାଟକ          କଲ ଯଥାବିଧି
ଚଉଦ ଲୋକେ ସେ ଗ୍ରନ୍ଥ          ହୋଇଲା ପ୍ରସିଦ୍ଧି ।
ସକଳ ବିଦ୍ୟା ତୁମ୍ଭର          ଅସାଧନେ ସାଧି
ଅବ୍ୟକ୍ତ ପୁରୁଷ ତୁମ୍ଭେ          ଅବୋଧକୁ ବୋଧି ।
ନମୋ କବିକୁଳଇନ୍ଦ୍ର          ନମୋ ବେଦବ୍ୟାସ
ପଣ୍ଡିତ ଲୋକ ମଣ୍ଡିତ          ପରମପୁରୁଷ ।
ବିଷ୍ଣୁ କୀର୍ତ୍ତି ବଖାଣିଲ          ଦିବ୍ୟ ମୂର୍ତ୍ତି ଧରି
ତୁମ୍ଭଙ୍କୁ ଏ ସଂସାରରେ          ନାହିଁ କେହି ସରି ।
ଓଁକାରେ ତୁ ବର୍ତ୍ତିମାନ          ଲକାର ପର୍ଯ୍ୟନ୍ତେ
ଦିବ୍ୟ ଚକ୍ଷୁରେ ପ୍ରସନ୍ନେ          ଦୃଷ୍ଟି ଦିଅ ମୋତେ
ତୁମ୍ଭେ ମୋତେ ସୁପ୍ରସନ୍ନ          ହୁଅ ବିଦ୍ୟାବନ୍ତ
କହିବ ଏ ପୁଣ୍ୟ ଧ୍ୱନି          ଶିଘ୍ର ଭାଗବତ ।

ତୁମ୍ଭେ ପୁରାଣ କରଛ　　ଯାହା ଶୁଦ୍ଧଶତଭେ
ମୁଁ ଲେଖଇ ଲୋକମନ—　　ରଞ୍ଜନ ନିମନ୍ତେ ।
ସକଳ ପ୍ରାଣୀ ସଂସାରେ　　ମୋହେ ଛନ୍ତି ରହୁ
ପୁଣ୍ୟ ଭଜନ ବିସ୍ମରି　　ନ କରନ୍ତି କେହୁ ।
ଛାଡ଼ି ପୁଣି ସଦମାର୍ଗ　　ବୁଡ଼ି ଭବଜଳେ
ଗୋବିନ୍ଦ ନାମ ଗୋଟିକି　　ପାସୋରି ସକଳେ ।
ସାରଦାଙ୍କ ଅନୁଗ୍ରହେ　　ଭାଗବତବାଣୀ
ସଂସାର ଜନ ମୁକତ　　ହେବେ ଏହା ଶୁଣି ।
ଏ ଯେ ହରିବଂଶ ଗ୍ରନ୍ଥ　　ଅଟେ ପୁଣ୍ୟମୟ
ଶୁଣି ଏ ଗ୍ରନ୍ଥକୁ ଜନେ　　ପାପ କର କ୍ଷୟ ।
ଜନ୍ମେ ଜନ୍ମେ ଅପୁତ୍ରିକି　　ଅଟଇ ଯେ ପ୍ରାଣୀ
ପାଇବେ ଅବଶ୍ୟ ପୁତ୍ର　　ଏ ପୁରାଣ ଶୁଣି ।
ଧନ ଜନ ଗୋପ ଲକ୍ଷ୍ମୀ　　ଯେ ଯାହାର ଇଚ୍ଛା
ଏ ଗ୍ରନ୍ଥ ଶୁଣି ପୂରିବ　　ତାଙ୍କ ମନବାଞ୍ଛା ।
ଶ୍ରୀକୃଷ୍ଣଚରଣ ତଳେ　　ଦେଇ ନିଜ ମନ
କହଇ ଅଚ୍ୟୁତାନନ୍ଦ　　ଦାସ ଏ ପୁରାଣ ।

# ପ୍ରହ୍ଲାଦ ଚରିତ

## ରାଜା ୬ ଗୋବିନ୍ଦଚନ୍ଦ୍ର ଭଞ୍ଜଦେଓ

ଏବ କେନ୍ଦୁଝର ରାଜ୍ୟର ରାଜା ଥିଲେ । ସେ ଜଣେ ଭକ୍ତ ଥିଲେ । ରାମଗାଥା, ଭକ୍ତବିନୋଦ, ଚରଣ ସୁଧାନିଧି ପ୍ରଭୃତି ଗ୍ରନ୍ଥ ତାଙ୍କ ଦ୍ୱାରା ରଚିତ ହୋଇଥିଲା ।

*  *  *  *

ପ୍ରଳୟ ଦଇତ ଥିଲା  କଶ୍ୟପ କୁମାର
ତ୍ରିଭୁବନେ ସମାନ ଗୋ  ନାହିଁ ବଳଅର ।
ବଜ୍ରଧର କୁବେର  ବରୁଣ ଯମ ରାଏ
ଚନ୍ଦ୍ର ସୂର୍ଯ୍ୟ ପବନ  ଅନେକ କଲେ ଭଏ
ଛାଡ଼ିଲେ ଯେ ଯାହା ସ୍ଥାନ  ଲୁଚିଲେ କାଏ
ମର୍ତ୍ତ୍ୟପୁରେ ଭ୍ରମିଲେ  ସାମାନ୍ୟ ଜନ ପ୍ରାଏ ।
ପ୍ରହ୍ଲାଦ ହୋଇଲା ଗୋ  ତାହାର ନନ୍ଦନ
ରାମ ଦବା କଲା ହରି—  ଚରଣେ ବନ୍ଦନ ।
ହରି-ସେବା ନିଷେଧ ଗୋ  ପିତା ତାର କଲା
ବଚନ ଲଙ୍ଘନେ ଗୋ  ବହୁତ ଶାସ୍ତି ଦେଲା ।
ତଥାପି ନ ପାସୋରିଲା  ଶ୍ରୀକୃଷ୍ଣର ନାମ
ନିରନ୍ତରେ ହରିଙ୍କି  ଭଜିଲା ଅବିଶ୍ରାମ ।
ପରମଭଗତ ଗୋ  ଅଟଇ ପ୍ରହ୍ଲାଦ
କୃଷ୍ଣ ଗୁଣି ଅନ୍ୟ ବାଣୀ  ନ ଲାଗଇ ସ୍ୱାଦ ।
ଭୃତ୍ୟ ଅପମାନ ସେ ଗୋ  ନ ପାରିଲା ସହି
ସ୍ତମ୍ଭରୁ ବାହାର ଗୋ  ନୃସିଂହ ରୂପ ହୋଇ ।

ଅସ୍ଥାନ ଉପରେ ଗୋ    ଦଇତ ଥିଲା ବସି
ନୃସିଂହ ବଜ୍ରଯେ ଗୋ    ଅଗରେ ତାର ଅସି ।
ଠହ ଠହ ଶବଦ    ବଦନ ବିକରାଳ
ଲହ ଲହ ଜିହ୍ୱା ଗୋ    ଭ୍ରମାଇ ଅନ୍ତରାଳ ।
ଦନ୍ତ ରଚମଚ ଗୋ    ବିକଟ ଝଟଝଟ
ତ୍ରିଭୁବନ କମ୍ପିଲା    ଶବଦ ଘଟଘଟ ।
ଘୁଙ୍ଗୁଡ଼ି ବଧାତେ ଗୋ    ପର୍ବତ ଯୋଏ ଚୂରି
ଶିରେ କର ଦେଇ ଗୋ    କମ୍ପଇ ବସୁନ୍ଧରା ।
ଅକାଶେ ମୂରତ ଗୋ    ପରମ ତେଜୋମୟ
ନୃସିଂହ ସୁମରନ୍ତେ    କରଇ ଜୟଜୟ ।
ଭୂଷଣ-କଠିନ ଗୋ    ତୀକ୍ଷଣ ଦନ୍ତପନ୍ତ
ବସନ୍ତେ କିଂଶୁକ କଢ଼ି    ହେମନ୍ତ ଦଶନ୍ତ ।
ଚନ୍ଦ୍ର ସୂର୍ଯ୍ୟ ଅଟଇ    ତାହାର ବେନି ଆଖି
ସୂର୍ଯ୍ୟ ଚକ୍ଷୁ ଦେନିଣ ଗୋ    ଦଇତକୁ ଦେଖି ।
ଚନ୍ଦ୍ର ଚକ୍ଷୁ ଦେନି    ପ୍ରହ୍ଲାଦକୁ ଅନାଇ
ଜଗତ ଚିତ୍ତ ଆନନ୍ଦ    କରିବାର ପାଇଁ ।
ରଥୀ ମହାରଥ    ଅତିରଥମାନେ ଥିଲେ
ଯେ ଯାହାର ଶସ୍ତ୍ର ସେ    ହରିଙ୍କି ପ୍ରହାରିଲେ ।
ମାୟାବନ୍ତ ଦଇତ    ଆକାଶପଥେ ଗଲେ
ଜଳଧାରା ଅନଳ    ପର୍ବତ ବୃଷ୍ଟି କଲେ ।
ଯେତେ ଶସ୍ତ୍ର ପ୍ରହାର ଗୋ    କଲେ ମହାବୀରେ
ବେଢ଼ି ତାଙ୍କୁ ପଡ଼ିଲେ ଗୋ    ଯୋଜନ ଆକାରେ ।
ସକଳ ସହସ୍ର ଯନ୍ତ୍ରୁଁ    ହୋଇଛି ପ୍ରକାଶ
କେଉଁ ଶସ୍ତ୍ର ଏ ଯେ ଗୋ    କରିବ ତାଙ୍କୁ ନାଶ ?

ଅଠ ଦୀର୍ଘ ବତ୍ତିଳ ଗୋ ବଳବନ୍ତ କାଏ
ସୁରଗଣ ଗନ୍ଧର୍ବଙ୍କୁ କମ୍ପାଇଛୁ ଭଏ ।
ତାହାକୁ ନିକଠ ଗୋ ଶ୍ରୀକୃଷ୍ଣ ଯନ୍ତୁଁ ଦର୍ଶି
କାଳାନଳ ଶର୍ଦ୍ଧଠ ପ୍ରହାର କଲ୍ଲ ଦ୍ୱିଷି ।
ଶଙ୍କଠର ତେଜ ସର୍ଶି ତ୍ରିଭୁବନ ତ୍ରାସି
ନୃସିଂହ ହୁଙ୍କାରନ୍ତେ ହୋଇଲ୍ଲ ଭସ୍ମସୃଷ୍ଟି ।
ବଳବନ୍ତ ସିଂହ କି ତ୍ରାସିଲ୍ଲ ବାଳସୂର୍ଯ୍ୟ
ବେନ କରେ ଅକର୍ଷିଲ୍ଲ ଦଇର ତନୁଜ ।
ଶଙ୍ଖଚକ୍ର ସର୍ଶି ଗୋ ଭୂଷିତ ବେନ କର
ସଭ୍ୟରେ ଶୁଭିଲ୍ଲ ଗୋ ଦ୍ୱରିଙ୍କି ମାର ମାର ।
ତ୍ରିଭୁବନେ ଜଇସ୍ୱୀ ଂଗୋ ହିରଣ୍ୟକଶିପୁ
ଜାନୁରେ ପକାଇ ତାର ବିଦାରିଲେ ବପୁ ।
ପୁତ୍ର ଛଳ ବହିଲ୍ଲ ପିତାକୁ କର୍ମ୍ମ ନାଶ
ପ୍ରହଲ୍ଲାଦ ପାଇଲ୍ଲ ବୈକୁଣ୍ଠପୁରେ ବାସ

*  *  *  *

# ବୃନ୍ଦାବନ ଦୃଶ୍ୟ

ରାଜା ୰ ଗୋବିନ୍ଦଚନ୍ଦ୍ର ଭଞ୍ଜଦେଓ

*　　*　　*　　*

ବୃନ୍ଦାବନ ଶୋଭା ସଖି　　କେ ପାରିବ କହି
ହରି କ୍ରୀଡ଼ା ନିମନ୍ତେ　　ନିର୍ମିଣି ଅଛି ବିଧି ।

ଚନ୍ଦ୍ରମାର କିରଣେ ଗୋ　　ବିପିନ ଧବଳ
ବୃନ୍ଦାବନ ପଥ ଗୋ　　ବିବିଧ ପରିମଳ ।

ଚନ୍ଦ୍ରଜ୍ୟୋତି ପଡ଼ି ତରୁ—　　ପଲ୍ଲବି ଧବଳ
କିରଣେ ଧବଳ ଦିଶେ　　ଆକାଶମଣ୍ଡଳ ।

ଚନ୍ଦ୍ର ଜ୍ୟୋତି ପଡ଼ି ଗୋ　　ଧବଳ ବୃନ୍ଦାବନ
ଦେଖିଲେ ହରଇ ସଖି　　ମୁନିଜନମନ ।

ଯମୁନାପୁଳିନ ବନ　　ଦିଶଇ ଧବଳ
ଯମୁନାର ଦୁଇ କୂଳେ　　ଧବଳ କମଳ ।

ଧବଳ କମଳ ଦଳେ　　ହୋଇଛି ପ୍ରକାଶ
ଧବଳ ଶରଦ ମଲ୍ଲୀ　　ଶୀତଳ ସୁବାସ ।

ଯମୁନାର ତୀରେ ଗୋ　　ବିବିଧ ଲତାବାସ
ଧବଳ କୁସୁମମାନ　　ହୋଇଛି ପ୍ରକାଶ ।

ଧବଳ ସକଳ ପକ୍ଷୀ　　କରୁଛନ୍ତି ନାଦ
ଯଛନ ଧେନ ଅନଙ୍ଗ　　କାମୀ ସଙ୍ଗେ ବାଦ ।

ଧବଳ ମୁକ୍ତା ହାର	ହର ହୃଦୟର
ଚନ୍ଦନେ ଧବଳ କର	ଶ୍ୟାମ କଳେବର ।

ଆଜାନୁଲମ୍ବିତ ଗୋ	ଧବଳ ପଦ୍ମମାଳ
ନାନାବର୍ଣ୍ଣ କୁସୁମେ	ଧବଳ ଶୋଭ ଚୂଳ

ଲମ୍ବଟେ ମୁକୁଟ ନାନା	ମଣିଗଣ ଖଞ୍ଜା
ବିମଳ ନିର୍ମଳ ଗୋ	ମୁକ୍ତା ପୁଞ୍ଜା ପୁଞ୍ଜା ।

ପୃଥିବୀରେ ବଜେ ହର	ଜଗତର ନାଥ
ଆକାଶେ ସକଳ ଦେବେ	ମସ୍ତକରେ ହାଥ ।

*　*　*　*

# ପାରିଧି

## ୰ ପଦ୍ମନାଭ ନରେନ୍ଦ୍ର

( ରାଗ ବରାଡ଼ୀ—ଅଷାଢ଼ଶୁକ୍ଳ ବାଣୀରେ )

ଏହି କବି ରଣପୁରର ରାଜା ଥିଲେ । ଏ ଜଣେ ପରମ ବୈଷ୍ଣବ । ସେ ପ୍ରଭାବତୀ ନାମକ ଖଣ୍ଡିଏ କାଳ୍ପନିକ କାବ୍ୟ ଓ ରାଧାକୃଷ୍ଣ ବିଷୟକ ଅନେକଗୁଡ଼ିଏ ସଙ୍ଗୀତ ଲେଖିଥିଲେ ।

*　　*　　*　　*

ଏମନ୍ତେ ନବୀତଟକୁ ଦେଖିଲେ　　ସମସ୍ତ ସୈନ୍ୟ ରୁଣ୍ଡ ହୋଇ ଠୁଳେ
ଦେଖି ହରଷ ନରେଶନନ୍ଦନ　　ବୋଇଲେ ଶୀକାର କର ବନ୍ଧନ
　　ଆଜ୍ଞା ପରମାଣେ,　　ବେଢ଼ିଲେ ବଳ ଅଚଳ ତକ୍ଷଣେ ।

ଚମକ ନିଶାଣ ଢଙ୍କ ଘାତରେ　　ଚମକ ପଡ଼ିଲା ଗିରିଶିଖରେ
ଗଡ଼ିଲେ ଜୀବ ଯେ ଥିଲେ ତଳକୁ　　ଛାଡ଼ିଲେ ଦ୍ୱିପ୍ର ବିଷମ ଗ୍ରାବକୁ
　　ତା ଦେଖି ଶବରେ,　　ବନ୍ଧିଲେ ରୁନ୍ଧି ତୀର ଧାରକାରେ ।

ଛୁରିକାରେ କେହୁ ଫୋଡ଼ି କା ପିଣ୍ଡ　　ମାରି ପକାଇଲେ କେ କାହା ମୁଣ୍ଡ
ଧରି କେ କାହାକୁ କଣ୍ଢ଼ ବଳେ　　ଫାରି ଠେସରେ ବ୍ୟାଖିଲେ ହେଳେ
　　ହରି ଅଦ ଜୀବ,　　କଷି ସହିତେ କଳ କଲେ ସବ ।

ଭୁଜଙ୍ଗ-ଶବଦେ ଘୋଡ଼ଙ୍ଗ ହାସି　　ଖଡ଼ଗରେ କେହୁ ଖଣ୍ଡଗ ନାଶି
ଖଲକୁ ଧରି କେ ପଲକୁ ଖେଦ　　ମିଣିଲ୍ଲ ସତ୍ତ୍ୱରେ ଭୂଷିଲ ବଦ
　　କେ ବଢ଼ାଇ କରି,　　ଗୋଡ଼ାଇ ଜୀବକୁ କରରେ ଧରି ।

ପାଶରେ କେ ଚନ୍ଦ୍ରହାସରେ ମଲେ  ହାସରେ ଡହିଁ କେ ବନ୍ଧ ପଡ଼ିଲେ
ଗରବ କରି କେ ଶରଭ୍ର ନାଶି  ଡରବରେ କେତ୍କ ଶର ବରଷି
କରବର ହୋଇ,  ପରବତ ଡେଇଁ କେତ୍କ ପଳାଇ ।

କୁଦାରେ ପଶି ଯେ ଭୁଦାରେ ଥିଲେ ଗଦାରେ ମାଲେ ତାହାଙ୍କୁ ନାଶିଲେ
ପଦାରେ ଦେଖିଣ ହରିଣଗଣ  ଖେଦାରେ କୁକୁରେ ନେଲେ ପସ୍ଗଣ
କେଦାରେ କେ ଲୁଚ,  ଲେଦାରେ ଭ୍ରବ ଏ ଅପନ୍ତ ଘୁଞ୍ଚ ।

ଶମ୍ବର ଦେଖି କେ କମର ଭିଡ଼ି  ଅମରଣେ ଧରି ତୋମର ଯୋଡ଼ି
ପାଶ୍ୱଙ୍କ ପଛକୁ ଘୁଞ୍ଚିଲ ଅଣେ  ପ୍ରହାର କରନ୍ତେ ମହାହରଷେ
ଭଜିଲ୍ଲ ସତ୍ୱରେ,  ବାଜିଲ୍ଲ ଜୀବନ ତେଜିଲ୍ଲ ଖରେ ।

ଗୁଳ ବାଜ କେତ୍କ ଠଳ ପଡ଼ିଲ୍ଲ  ଝଙ୍କି ଶାବଳ କେ ଛଳ ଫିଙ୍ଗିଲ୍ଲ
କୋପରେ ଶ୍ୱେପ କେ ଗୃପରେ ଭରି ଦପରେ ବନ୍ଧିଲ୍ଲ ଠାଣେ ଓଠାର
କେ ଦେଖି ଡରନ୍ତୁ,  ଯୋଖି ପ୍ରହାରିଲ୍ଲ ଶର ନ ଲକ୍ଷ୍ୟୁ ।

ଗଣ୍ଡରେ ବେଗକୁ ଅତ ରହସେ  କେ ଗାର ବନ୍ଧିଲ୍ଲ ମଣ ହରଷେ
ଫୁଟିଲ୍ଲ ବେଳକୁ ଫୁଟିଲ୍ଲ ବାଣ  ଛଡ଼ିଲ୍ଲ ଯାହା ତା ଛୁଟିଲ୍ଲ ପ୍ରାଣ
ଲୁହିଲ୍ଲ ମହୀରେ,  ଦେହିଲ୍ଲ ଜୀବ ତା କାଳଦୂତରେ ।

ସିପାଇ ତୁରଙ୍ଗ କମାଇ ଖରେ  ଛାଡ଼ିଲେ ଯହୁଁ ସେ ଜଙ୍ଗଲେ ଖରେ
କ ରଙ୍ଗରେ ଗଲେ ତୁରଙ୍ଗ କୁଦ  ଠିଅରେ କାହାକୁ ଶୁଅରେ ଛେଦ
ସର୍ବେ ଏ ବଧିରେ,  ଗର୍ବେ ଖର୍ବ ଜନ୍ତୁ କଲେ ଅଗରେ ।

ଶ୍ୟେନ-ପାରଧିରେ ଛନକେ ହୋଇ ତନମନ ତରୁଶିଖରେ ଦେଇ
ମକ୍ଷିସମୂହରେ ଅକ୍ଷି କବେଶି  ଛୁଟାଇବା ଅଣେ ଫିଟାଇ ପାଶି
ଧରଣୀ ମୃଠାରେ,  ଫିଙ୍ଗନ୍ତେ ଲାଗେ ସେ ପେଟ୍କେ ଅଠାରେ

ବାବଲୁ ଦଳକୁ ଦେ ସଜ ସତ୍ୱରେ   ଖୁଣ୍ଟିଲ୍ଲ ସନ୍ଧ୍ୟଁ ସେ ଛୁଟିଲ୍ଲ ଖରେ
ଗୋଡ଼ାଇ ବହୁତ ଚଢ଼ାଇ ନାଶେ   ଲଢ଼ାଇଲେ ତାର ବଢ଼ାଇ ଦଶେ
ଭୂରୁ ମୋଡଚଯ୍ୟ,   ଦୂରୁଁ ମୋଡ଼ଗଲେ ବହୁତ କଯ୍ୟ ।

ଏ ବଧି ତନ୍ଦି ପାରଧି ବଢ଼ାଇ   ସକଳ ବଳା ଏକରୁଣ୍ଡ ହୋଇ
ଜନ୍ମାତଃରେ ଅସିଣ ମିଳଲେ   ନୃପନନ୍ଦନଙ୍କୁ ଦର୍ଶନ କଲେ
ବୁହାଇଲେ ଜୀବ,   ରଖିବାକୁ ତନ୍ଦି ନୋହଲ୍ଲ ଠାବ !

ଭକ୍ଷ୍ୟ ଅଭକ୍ଷ୍ୟ ସେଠାରେ ବାଛଲେ ଅଭକ୍ଷ୍ୟ ଜୀବ ଦୂର କରଦେଲେ
ସଂଶବନନ୍ଦନ ଅନୁରୂପରେ   ମେଦ ବାଣ୍ଟିଦେଲେ ପୂର୍ବ ବଧିରେ
ସମସ୍ତେ ହରଷ,   ସତ୍ୱରେ ହୋଇଲେ ବାହୁଡ଼ା ବେଶ

ବାରଣଅଇଣ୍ଡବରବାହନୀ—   ଚରଣବେନ ମାନସରେ ଘେନ
ଶରଣ କର ତାହାକୁ ଅନଣ   ଶରଣ ବନ୍ଦ ଦୁର୍ଗ ନରହିଣ
କୃପା କର ମାତ,   ତୁମ୍ଭ ଅନୁଜ୍ଞାରେ ହେବ ଏ ଗୀତ ।

# ଗୋପୀଭାଷା

## ଦନାଇ ଦାସ

ନୈସର୍ଗିକ କବି ଦନାଇ ଦାସ ବା ଜନାର୍ଦ୍ଦନ ଦାସ ଜଣେ ପ୍ରଧାନଭକ୍ତ ଥିଲେ । ଏହାଙ୍କ ରଚିତ ଗୋପୀଭାଷା ଉତ୍କଳର ପ୍ରରପଲ୍ଲୀରେ ସୁପରିଚିତ । ଗୋପୀଭାଷାର ଭାଷା ସରଳ, ସୁଲଳିତ ଓ ଏହାର ଭାବ ହୃଦୟସ୍ପର୍ଶୀ ।

କୃଷ୍ଣ କଥା ପାଇଁ ଗୋପୀସକଳ
ଶୁଣ ସୁମରି ହୁଅନ୍ତି ବିକଳ ।

ତାହିଁ ଦାରୁଣ ଅକ୍ରୂର ଅଇଲା
କଂସ ଆଜ୍ଞା ବୋଲି ଗୋପେ କହିଲା ।

କୃଷ୍ଣ ଅସିବେ ବୋଲି ଗଲେ ଭଣ୍ଡି
ତାହା ଜାଣିଲେ କପାଁ ଦ୍ୟନ୍ତୁ ଛାଡ଼ି ?

ରଥ ବେଢ଼ିଣ ସକଳ ତରୁଣୀ
ମାର ମରନ୍ତୁ ଅକ୍ରୂରକୁ ପୁଣି ।

କଂସ ଯାହା କରୁ ପଛେ କରନ୍ତା,
ଗୋପପୁର ଯାକ ପଛେ ମାରନ୍ତା ।

ତହିଁ ମଲେ ସେ ହୁଅନ୍ତା କାରଣ
ଯାହା ଉପେକ୍ଷି ଗଲେ ନାରାୟଣ ।

ଯେବେ ଶ୍ରୀକୃଷ୍ଣ ଗୋପରେ ଥାଆନ୍ତେ
ଲକ୍ଷେ କଂସ ଆସି କିସ କରନ୍ତେ ?

କେତେ ଅସୁର ଗୋପକୁ ଆଇଲେ
ମନ୍ଦ ବର୍ଗର ସର୍ବେ ନାଶ ଗଲେ ।

ଯେବେ ସେହି ରୂପେ କଂସ ମରନ୍ତା
କୃଷ୍ଣ ଆମ୍ଭ ସଙ୍ଗ କାହିଁ ଛାଡ଼ନ୍ତା ?

ଯେବେ ଗୋପୀଏ ବୋଇଲା ଥାଇଣ
ଆମ୍ଭେ ବେଳକୁଁ ହୁଡ଼ିଗଲୁ ପୁଣ ।

ଗୋଳ କରି ନ ଛାଡ଼ିଲେ ମାଧୋଇ
କିସ କରନ୍ତା କଂସ ଛାର ହୋଇ ?

ଯେବେ ଅକ୍ରୁର ବାହୁଡ଼ି ଯାଆନ୍ତା
କୃଷ୍ଣ ଗୋପପୁରେ ରହି ଥାଆନ୍ତା ।

ଯାଇ କହନ୍ତା ଅକ୍ରୁର ରାଜାକୁ
କଂସ ଡରେ କି ଆସନ୍ତା ଗୋପକୁ ?

ସେ କି ଶୁଣିଣ ନାହିଁ କୃଷ୍ଣ କଥା
ସେ କି ଇନ୍ଦ୍ରଙ୍କୁ ବଡ଼ ସାମରଥା ?

ଇନ୍ଦ୍ର ସପତ ଦିନ ବୃଷ୍ଟି କଲା
ବଜ୍ରଘାତେ ପଥର ବରଷିଲା ।

ଛଫ ଅଙ୍କାରେ ଗିରିବର ଧରି
ଗୋପ ସମ୍ପଦ ରଖିଲେ ମୁରାରି ।

ଇନ୍ଦ୍ର ହାରିଣ ଶରଣ ପଶିଲା
ଗୋପେ ଗୋବିନ୍ଦ ନାମ ଦେଇ ଗଲା ।

ସେ କି ଶୁଣିଣ ନାହିଁ କଣ୍ଠ ଦେନ
ଗୋପେ ଯେତେକ କଲେ ଖେଳ ବେନ ?

କେତେ କେତେ ଶପଥ ନ ପଢ଼ିଲ
ତୃପ୍ତ ଥିଲକୁ କଛୁ ନ ଲଗିଲ ।

ଯେବେ କେ ଅବା ଅମ୍ଭଙ୍କୁ ରଖିବ
ଅମ୍ଭ ବିରହ ଦୁଃଖ ଉପେକ୍ଷିବ ?

ଯେତେ ବୋଲଣ ଗୋପୀ ସର୍ବ ଦୁଃଖୀ
ଯେକ ଗୋପୀ ବୋଇଲା ଶୃଣ ସଖି ।

ସେ ଗୋ ଦାରୁଣ ଅଟଇ କହ୍ନାଇଁ
ଯେତେ ନିର୍ଦ୍ଦୟା ବୋଲି ଜାଣୁ ନାହିଁ ।

ଯେବେ ଜାଣିଥାନ୍ତୁ ବେଲେ କଠୋର
ଅମ୍ଭ ହୃଦେ କି ନଦନ୍ତେ ପଥର ?

ନିଶି ଦିବସେ ଯେନ ଭୁଲିଥିଲ
ଯେବେ ନିସ୍ୱଣ କରି ଛାଡ଼ିଗଲ ।

ଯାହା ଘରେ ଯେଉଁ ଦ୍ରବ୍ୟ ଅପୂର୍ବ
ତାଙ୍କୁ ଲୁଗୁଇ ଥୋଇଥାଉଁ ସର୍ବ ।

ଅମ୍ଭେ ପଢ ତନୟ ଗୋ ନ ଜାଣୁ
ଗୁରୁ ଗଉରବ ଲାଜ ନ ମଣୁ ।

ଅମ୍ଭ ପଢ ତନୟ ସବୁ ସେହୁ
ତାଙ୍କୁ ନ ଦେଖି ଯାଉଅଛୁ ଦେହୁ ।

ତାର ମତ୍ତ ସାରଙ୍ଗ ଗୃହ ଗତି
ଦେଖି ଦେହ ଧରେ କେଉଁ ଯୁବତୀ ?

ସେ ଗୋ ବନରୁ ଆସୁ ଥାଇ ଗୃହ
ଶିରେ ବରହପୁଚ୍ଛ ଶୋଭେ ଝାଳ ।

ନାସେ ବର୍ତ୍ତୁଳ ମୁକୁତା ଲମ୍ବଇ
କର୍ଣ୍ଣେ କୁଣ୍ଡଳ ବେନି ବିରାଜଇ ।
ଚନ୍ଦ୍ର-ଫାଳିଆ ଶୋଭେ କଣ୍ଠ ମଝି
ଯେହ୍ନେ ଗଗନରେ ଚନ୍ଦ୍ରମା ବିରାଜି ।
ଗୋରଚନା ଚିତା ଶୋଭେ କପାଳେ
ତଥି ଉପରେ ଗୁଞ୍ଜ ଗୁଞ୍ଜମାଳେ ।
ଉରେ ଶାର୍ଦ୍ଦୁଳ ନଖ କଣ୍ଠିମାଳୀ
ଅଙ୍ଗେ ପଡ଼ିଣ ଥାଇ ଗୋରୁଧୂଳି ।
ହସ୍ତେ ମୁରଲୀ ଗୋଟି ଥାଇ ବେନି
ଇଚ୍ଛା ହୋଇଲେ କରୁଥାଇ ଧୂନି ।
କରେ ବଳୟ ବାହୁଟି କଙ୍କଣ
କଟିତଟେ ଶୋଭେ ପୀତବସନ ।
କଟିସୂତ୍ର ମେଖଳା ଓଡ଼ିଅଣୀ
ଗୁଲ୍ଫୁ ଚରଣେ ନେପୁର ବାଜେଣି ।
ରତ୍ନ କଠାଉ ଶୋଭେ ପଦ୍ମପାୟେ
ଦାଷ ଦନାଇ ସେବା ସେହୁଠାୟେ ।

# ବୁଢ଼ା ନାଉରୀ

## ✓ ଦୀନକୃଷ୍ଣ ଦାସ

ଉତ୍କଳର ପ୍ରତିଭାଶାଳୀ କବିମାନଙ୍କ ମଧ୍ୟରେ ଦୀନକୃଷ୍ଣ ଦାସଙ୍କ ସ୍ଥାନ ଅତି ଉଚ୍ଚ । ଏହାଙ୍କର "ରସକଲ୍ଲୋଳ" କାବ୍ୟର ପଂକ୍ତିଗୁଡ଼ିକ 'କ' ଅକ୍ଷରରେ ଆରମ୍ଭ । କବି ଏପରି ନିଗଡ଼ ମଧ୍ୟରେ ଲେଖନୀ ଚାଳନ କରି ସୁନ୍ଦର ଭାଷାରେ ଯେଉଁ ଲାଳିତ୍ୟ ସୃଷ୍ଟି କରିଅଛନ୍ତି, ତାହା ଅନନୁକରଣୀୟ । କବି ରସକଲ୍ଲୋଳ ବ୍ୟତୀତ ନାବକେଳି, ରସବିନୋଦ, ଗୁଣସାଗର, ଭବସମୁଦ୍ର, ଲୁଢକେଳି, ଅମୃତସାଗର, ମୁକ୍ତି-ସାଗର, ପ୍ରସ୍ତାବସିନ୍ଧୁ, ତତ୍ତ୍ୱସାଗର, ଜଗମୋହନ, ଜ୍ଞାନସାଗର, ନାମରତ୍ନଗୀତା ଓ ଅନେକ ଚଉତିଶା ରଚନା କରିଅଛନ୍ତି ।

ଏମନ୍ତ ବର୍ଷାର କରନ୍ତେ ଏଣେ
ନାବ ଗୋଟାଏକ ଦିଶିଲା ତେଣେ ।

ଅଖାଳ ଦଉଡ଼ି ବାନ୍ଧିଛି ଟାଣି
ଦଦରା ନାବରୁ ବହୁଛି ପାଣି ।

ପାଚିଲା ଦଉଡ଼ି କଙ୍କରେ ପାଡ଼ି
ନାବ ପୂର୍ବ ମଙ୍ଗେ ବସିଛି ମାଡ଼ି ।

ମୀନ ଖାଉଥାଏ ଅଛି ପାଖର
ଜାଲ ପଡ଼ିଅଛି ନାବ ଭିତର ।

ଉମାଳ କରି	ଗୀତ ପଦେ ଗାଇ
ସ୍ଥିର କରି ନାବ	ଦେଖୁଛୁ ବାହି ।
ଅଛି ପରପଞ୍ଚ	ଖାଙ୍କର ବେଶ
ଦେଖି ନ ଯୋଗାଏ	ଏମନ୍ତ ବେଶ ।
ବେନି ନୟନରୁ	ପେଚଡ଼ା ବହେ
ବାଙ୍କ ନୟନେ	ଚୈରଥାଇ ଗୃହେଁ
ଗୋଦଡ଼ ହୋଇଛି	ଡାହାଣ ଗୋଡ଼
ବୁକୁରେ ପଡ଼ୁଛି	ପାକଲ୍ଲ ଥୋଡ଼ ।
କଳା ଦେହ ତାର	ବସ୍ତ୍ରର ମୋଠା
ଦନ୍ତ ନାହିଁ ବୁଢ଼ା	ପାକୁଅ ଗୋଠା ।
ବଚନ କହିଲେ	କୋମଳ ଭାଷେ
ହସିଲେ ବୁଢ଼ା	ପରପଞ୍ଚ ଦଶେ ।
ତାହା ଦେଖି ଅମ୍ଭେ	କ୍ଷୁଧିତ ହୋଇ
ନାବ ଅଣ ବୋଲି	ଡାକିଲୁ ଗୋଇ ।
ଜଣେ ଜଣେ ତୋତେ	କଉଡ଼ ଦେବୁଁ
ପାରି କରିଦେଲେ	ମଥୁରା ଯିବୁଁ ।
ଅସ୍ଥିର ହୋଇଲୁ	ଖଙ୍କା ଗୋରସ
ଅଜି ଘଡ଼ିକେ	ସବୁ ଯିବ ନାଶ ।
ସକାଳ ପହରୁ	ଅଛୁଁ ଅନାଇ
ବେଗେ ନାବ ଅଣ	କେଉଁଠ ଭାଇ ।
ଅନେକ ପ୍ରକାରେ	ଡାକିଲୁଁ ତାକୁ
କେଉଁ ନ ଅସିଲା	ଅମ୍ଭ ପାଖକୁ ।
ବଦନ ଟେକି	କଣିଅଇ ଗୃହେଁ
ଏଣିକି ବୋଇଲେ	ତେଣିକି ଯାଏ ।

କାଲି ଯେସନେ — ଥାଇ ପାଶେ ରହୁ
ଡାକି ଡାକି ମଲେ — ଶୁଣେଇ ନାହିଁ ।
ମନତାପ କରି — ଅଛ ଧିକ୍କାରେ
ଗାଳି ଦେଲୁଁ ତାକୁ — ନାନା ପ୍ରକାରେ ।
ପଢ଼ ନ ମଲୁ ରେ — ଜାଡ଼ୁଅ ଗୋଠା
କାଲି ହୋଇଲୁ କି — ଅରେ ବେଜଠା ?
ଡାକି ଡାକି ଅମ୍ଭେ — ମରୁହୁଁ ଏଣେ
ସାପ ଖାଉ ତୋର — ବେନ ଶ୍ରବଣେ ।
ଦଇବ ଯେମନ୍ତ — ହୋଇବ ସତ
ବୁଲୁରେ ତୋର — ମାଡ଼ବସୁ ଭୂତ ।
ନାବ ମଙ୍ଗ ଖଣ୍ଡି — ପଢ଼ଙ୍କ ଛଡ଼
ମଝି ନଈରେ ତୁ — ମରିବୁ ବୁଡ଼ି ।
ଅକାଳ ଦଉଡ଼ — ଛଡ଼ଣ ଯାଉ
ନାବ ବୁଡ଼ୁ ତୋତେ — କୁମ୍ଭୀର ଖାଉ ।

# ଶ୍ରୀକୃଷ୍ଣଜନ୍ମ

୰ ଜ୍ଞାନକୃଷ୍ଣ ଦାସ

( ରାଗ—ଶଙ୍କ )

କର ଅହେ ସାଧୁଜନ— ମାନେ ମନ ଏକତାନ
କର୍ଣ୍ଣ ଦେଇ କମଳନୟନ-କଥାରୁ
କଳିକଲୁଷସଂଘାତ ଉପରେ କର ସଂଘାତ
ସଂଶୟ ନ କର 'କାଳଦଣ୍ଡ ବ୍ୟଥାରୁ
କଳାକରେ ଅଙ୍କାର ପ୍ରାୟ
କୃଷ୍ଣ କଥା ଶ୍ରବଣରେ ଦୁରିତ କ୍ଷୟ । ୧ ।

କଉଣସି କାଳେ ଭୂମି ହୋଇ ଧରଣୀସୁନ୍ଦରୀ
ବିନୟ ହୋଇ ବ୍ରହ୍ମାଙ୍କ ଅଗେ କହିଲା
କଂସ ପ୍ରତାପରେ ଦେହ ହୋଇଲା ଅତି ଦୁଃସହ
କି କରିବି ଏବେ କହ ବୋଲି ବୋଇଲା
ହଂସକେତୁ ଶୁଣି ଏ କଥା
କହିଲେ ଜଗନ୍ନାଥଙ୍କୁ ଅବନୀବ୍ୟଥା । ୨ ।

କମଳମୁଖୀକମଳା— କଣ୍ଠମରକତମାଳା
ଆଜ୍ଞା ଦେଲେ କରୁଣାକଟାକ୍ଷେ ଅନାଇ
କିଛି ନ ବିଚାର ତୁମ୍ଭେ ଯଦୁକୁଳେ ଯାଇ ଅମ୍ଭେ
ଜାତ ହେବୁଁ କଂସପ୍ରାଣ ଘେନିବା ପାଇଁ
କର ତୁମ୍ଭେ ଏବେ ଗମନ
କରିବାକୁ ଗୋପକେଳି ଅମ୍ଭର ମନ । ୩ ।

କୃପାସିନ୍ଧୁ ଆଜ୍ଞା ପାଇ          ପରମ ଆନନ୍ଦ ହୋଇ

ପଦ୍ମଯୋନି ପରବେଶ ହୋଇଲେ ପୁରେ

କିଛି ଦିନ ଅନ୍ତେ ହରି          କୋଟି କାମ ରୂପ ଧରି

ରହିଲେ ଯାଇ ଦେବକୀ ଦେବୀ ଗର୍ଭରେ

କେତେ ଦିନେ ହୋଇଲେ ଜାତ

କେ ଅବା କହିବ ତାହାଙ୍କର ଚରିତ ? ୪ ।

କରେ ଶଙ୍ଖ ଚକ୍ର ଧରି          କଂସଠାରେ କ୍ରୋଧ କରି

ବାଳକାଙ୍କୁ ସାରବେଶ କଲେ ପ୍ରକାଶ

କଣ୍ଠେ କଉସ୍ତୁଭ ମଣି          କୋଟି ଶଶଧର ଜିଣି

କିରଣ ପ୍ରକାଶ ପାପ-ଅନ୍ଧାର ନାଶ

କଟିତଟେ ପୀତ ବସନ

କଳାମେଘକୋଳରେ ବିଜୁଳି ଯେସନ । ୫ ।

କର୍ଣ୍ଣେ ମକର କୁଣ୍ଡଳ          ଝଟକେ ଗଣ୍ଡମଣ୍ଡଳ

ମସ୍ତକରେ ମଣିମୟ ମୁକୁଟ ଶୋହେ

ଜଳଜ ଲଳିତ ହୃଦ—          ଦେଶରେ ଶ୍ରୀବତ୍ସପଦ

ଭବଗ୍ରାହ୍ମି ନାଥ ଭକ୍ତ ଭବରେ କହେ

କୋଟି କାମ ନିନ୍ଦେ ଶ୍ରୀଅଙ୍ଗ

କରେ କଙ୍କଣ ଚରଣେ ନୂପୁର ସଙ୍ଗ । ୬ ।

ହରି ଏ ରୂପ ଦର୍ଶନେ          କଲେ ସ୍ତୁତି ନିବେଦନ

ଜନକ ଜନନୀ ଅତି ଆଶ୍ଚର୍ଯ୍ୟ ହୋଇ

ତହୁଁ କହୁଁ ମାୟା କରି          ସେ ରୂପ ସମ୍ବରି ହରି

ବାଳମୁକୁନ୍ଦ ମୂରତି ହେଲେ ଗୋସାଇଁ

କଂସର ଯେତେକ ପାହାରି

କାଳନିଦ୍ରାରେ ଚେତନା ନାହିଁ କାହାରି । ୭ ।

କଲ୍ଲ କାଳେ କନ୍ୟାଦାନ ବସୁଦେବେ ଉଗ୍ରସେନ
କଉତୁକେ କଂସ ରଥ ବାହୁ ଯେ ଥିଲ୍ଲ
କୋମଳ ଗମ୍ଭୀର ବାଣୀ ଅକାଶମଣ୍ଡଳୁ ଶୁଣି
ଭଗ୍ନୀ ଭଣୋଇଙ୍କି ନେଇ ଶାଙ୍ଖୋଳ ଦେଲ୍ଲ
କାଳେ ସେ ଚରଣୁଁ ଫିଟିଲ୍ଲ
କରିବାକୁ ବଳେ ଶୁଭ ଲଗ୍ନ ଖଟିଲ୍ଲ । ୮ ।
କରେ ଧରି ସୁତ ଧୀରେ ଗମନ କରନ୍ତେ ଖରେ
ଉଗ୍ରସେନ ଅସି ଓଗାଳଲ୍ଲ ଅଖରେ
କରେ ଶଙ୍ଖ ଚକ୍ର ଧରି ଦରଶନ ଦେଇ ହରି
ପ୍ରବେଶ ହୋଇଲେ ଗୋପେ ନନ୍ଦମନ୍ଦିରେ
କ କଂହୋଇ ଦଇବଯୋଗେ
କୁମାରୀ ହୋଇଛି ନନ୍ଦଙ୍କର ସେ ଲଗେ । ୯ ।
କରି ତାହା ପ୍ରତିଦାନ ସତ୍ୱରେ କରି ଗମନ
ପ୍ରବେଶ ହୋଇଲେ ବସୁଦେବ ମନ୍ଦିରେ
କୁଅଁ କୁଅଁ ବାଣୀ ଶୁଣି ଉଠିଲେ ରକ୍ଷକଶ୍ରେଣୀ
କହିଲେ କଂସକୁ ଯାଇ ନଶିଶେଷରେ
କଠୋରହୃଦୟ ଦଇତ
କରିବାକୁ ନାଶ ତା ଅଇଲ୍ଲ ତୁରିତ । ୧୦ ।
କ୍ରୋଧଭରେ ବୋଲେ ବାଣୀ ଦଅ ସେ ବାଳକ ଅଣି
କାଳ ମୋର ଜନମିଛ ତୁମ୍ଭ କୋଳରେ
କହିଛନ୍ତି ଦେବଗଣ ଅବଶ୍ୟ ତୋହର ପ୍ରାଣ
ନେବ ଏହାର ଅଷ୍ଟମ ଗର୍ଭ ବେଳରେ
କରଇ ମୁଁ ତାହାକୁ ନାଶ
କ୍ଷଲେ ହେଲା ଶତ୍ରୁଠାରେ ନ ପାଇ ଯଶ । ୧୧ ।

କର ଯୋଡ଼ ବସୁଦେବ          ବୋଲଇ ଶୁଣ ହେ ଦେବ
ତୁମର ନୁହଇ ସେ ହୋଇଛି ତୁମାରି
କରୁଣାହୃଦୟ ତୁଅ          ମୋତେ ଏ ଦୁହିତା ଦିଅ
ବଞ୍ଚିଲେ ତୁମ୍ଭର ଏ ନୋହେ ବଇରି
କଲେହେଁ ଅନେକ ଯତନ
କର୍ମ ଧରା କରିବାକୁ କେବା ଭାଜନ ? ୧୨ ।
କର୍ପୂର ଚନ୍ଦନ ଦେଇ          ରସୁଣ ଲେପିଲେ ନେଇ
କେତେବେଳେ ଛାଡ଼ଇ କୁତ୍ସିତ ବାସନା ?
କୁଟିଳ ଦୁଷ୍ଟ ନାସ୍ତିକ          ମହାପାପୀ ଅବିବେକ
ଲୋକଙ୍କ ସ୍ୱଭାବ ସେହି ପ୍ରକାରେ ସିନା
କୋକିଳବଚନ ମଧୁର
କରଇ ବିଯୋଗୀ ଜନମନ ବିଧୁର । ୧୩ ।
କଂସ ମନରେ ବିଚାର          ବିଷ୍ଣୁମାୟା ଅଗୋଚର
କାମିନୀ ରୂପେ ମାରିଛି ବିଲୋଚନ
କରିଛି ଶିବଙ୍କୁ ଯାହା          କର୍ଣ୍ଣେ ଶୁଣିଅଛି ତାହା
କେମନ୍ତେ ଏହାକୁ ମୁଁ କରିବି ମୋଚନ
କାତ୍ୟାୟନୀ ସୁବ୍ରତୀ ହୋଇ
କଉଣସି କୁଳକୁ ସେ କି କରି ନାହିଁ ? ୧୪ ।
କରେ ଧରି କୁମାରୀକି          କଚଡ଼ନ୍ତେ ଶିଳେ ନେଇ
ଆକାଶମଣ୍ଡଳେ ଦେବୀ ଯାଇ ରହିଲେ
କାରଣ ନ ଥାଇ ମୋତେ          କୋପ ଯେ କଲୁ ତୋ ଚିତ୍ତେ
କାଳେ କାଳକୁ ଦେଖିବୁ ବୋଲି ବୋଇଲେ
କହି ହେଲେ ଅନ୍ତରହିତ
କୁବଳଚନ୍ଦ୍ର ପରାୟେ ଭ୍ରମିଲା ଚିତ୍ତ । ୧୫ ।

ବଳ ପୂର୍ଣ୍ଣ କୁବଳୟର    କେଶୀ ଅଘା ବକାସୁର
ଶକଟା ତୃଣାବର୍ତ୍ତିକ ପୂତନା ତାଙ୍କ
ସଇବ ଲୁମ୍ଭେ ଏତେକ    ଭଉଁଲା ପୁଅ ଯେତେକ
ମାରିବାକୁ ପେ ଯାହାରେ ରହିବ.ଠାକ
କଂସଆଜ୍ଞା ପାଇ ସେ ଦୂତେ
କଲେ ବାଳକନାଶନ ଉପାୟ ଛନ୍ଦେ । ୧୬ ।

କମଳନୟନ ହରି    ନନ୍ଦପୁରେ ବଢେ କରି
କଲେ ନାନା ଉତ୍ସବ ଅନନ୍ଦ ଭିଆଣ
କେତେଠାରେ କେତେ ଗୀତ    କେତେ ରୂପେ ହୋଏ ନୃତ୍ୟ
କହିବାକୁ ବଚନେ କେ ଅବା ସିହ୍ୱାଣ
କଲେ ସୂତିଗୃହ ବିଧାନ
କେ କହିବ ନନ୍ଦ ଦେଲେ ଯେତେକ ଦାନ ? ୧୭ ।

କନକର ଦୀପାବଳୀ    ଗୃହ ପାରୁଶରେ ଜାଳି
ଗୃହୁ ଚନ୍ଦ୍ରାତପମାନ ନେଇ ମଣ୍ଡିଲେ
କର୍ପୂର'ଚନ୍ଦନ ଛସ    ପକାଇ ସେ ପୁର ତୋଷ
କଷାଇ ଅଳକାପୁର ତୋଷ ଖଣ୍ଡିଲେ
କନକ ଖମ୍ଭେ ଖଟାଇ ଦୋଳି
କୁମାରକୁ ଶୁଆଇ ଦେଲେ ଢୁଲଢୁଳ । ୧୮ ।

କାମପାଳ ଅଗ ତଣ୍ଡି    ଜାତ ହୋଇ ଥିଲେ ରଦ୍ଧ
କ୍ରମେ ବେନି ଭାଇ ପାଇ ହୋଇଲେ ସଙ୍ଗ
କାଳିନ୍ଦୀ ସୁରସରିତ    ହୋଇଲ ପ୍ରାୟେ ଏକତ
ଜନ୍ମାୟୁ ଦଶେ କଳା ଧଳା ଶ୍ରୀଅଙ୍ଗ
କରିବାକୁ କଳୁଷ ନାଶ
କଲ ବହୁ ମଝେ ବେନି ତୀର୍ଥ ପ୍ରକାଶ । ୧୯ ।

କରଇ ପବନ ଅନ                    ତୀର୍ଥ ଜଳେ କଲେ ସ୍ନାନ
ଏ ତୀର୍ଥ ନାମରେ ନାନା ଦୁରିତ ନାଶେ
କଇବଲ୍ୟ ଲଭି ହେଲେ                    ନ ପଡ଼ି ଜଠର ଜଳେ
ବଇକୁଣ୍ଠେ ବସି ବଇକୁଣ୍ଠ ସନ୍ତୋଷେ
କର ଏହୁ ତୀର୍ଥ କୀର୍ତ୍ତନ
କହୁଥାଇ ଦୀନକୃଷ୍ଣ ସୁଖେ ନର୍ତ୍ତନ । ୨୦ ।

## ଶରତ୍ ବର୍ଣ୍ଣନା

୰ ଦୀନକୃଷ୍ଣ ଦାସ

( ରାଗ—କଲ୍ୟାଣ ପଡ଼ତାଳ )

କ୍ରମେ ପ୍ରବେଶ                    ହୋଇଲା ଶରଦ
କମଳଧରେ                    ଦଶିଲେ ବଶଦ ।
କୃପଣ ହୋଇଲେ                    ଅମୃତ ଦାନେ
କେବଳ ଜମ୍ବୁଦ                    ହେଲେ ଗର୍ଜ୍ଜନେ ।
କଳୁଷ ନଭ                    ଦଶିଲେକ ଶୋଭା
କଲେ ପ୍ରକାଶ                    ପୂର୍ଣ୍ଣଚନ୍ଦ୍ରେ ପ୍ରଭା ।
କତ୍ରଷ ନଦୀ—                    ଜଳରୁ ଉଠିଲେ
କମଳ କୁମୁଦ—                    ମାନେ ଫୁଟିଲେ ।

କମଳା-ନେଶ— ଛଟକ ପର୍ଯ୍ୟେ
ଦୀପ୍ତ ଶଙ୍ଖ କମ୍ପାଇ କାୟେ ।
କମନୀୟ ଦଶେ ପୁଲକ ତୁଳ
କଠିନ ହୋଇଲେ ମଣ୍ଡି କମ୍ବାଳ ।
କୃଷ୍ଣଅଙ୍ଗରେ ପୀତବାସ ପ୍ରାୟେ
କେଦାରେ ପକ୍ୱ ଶାଳ ଶୋଭ୍ଯ ପାଏ ।
କୁମାରୀ ଗୀତ ଶୁଭଇ ବହୁତ
କରଇ ହରଷ ଜନଙ୍କ ଚିତ୍ତ ।
କେଉଁଠାରେ ଶ୍ୱେତ ଛଦ ଅଦ୍ଭୁତ
କମନୀୟ ଦଶେ ଝିଲ୍ଲୀସ୍ତବନ୍ତ ।
କାମଦେବ-ଶ୍ୱେତ— ଚାମର ପ୍ରାୟେ
କାଶତଣ୍ଡୀ ଫୁଲ ଚଳନ୍ତ ବାୟେ ।
କୁସୁମବନ୍ତ ଯେ ବନ୍ଧୁକ ଫୁଲ
କାନ୍ତାକାନ୍ତ ଦନ୍ତ ବସନ ତୁଲ ।
କାନ୍ତରହିତ କାନ୍ତା ପ୍ରାୟେ ହୋଇ
କଳାପୀ କଳାପ ଅଙ୍ଗୁ ପକାଇ
କେକା ଛାଡ଼ି ହେଉଛି ମଉନବ୍ରତ
କଳେ ହଂସ , ମାନସର ତ୍ୟକତ ।
କଣ୍ଠତନ୍ତ ତାର ଗ୍ରାମରେ ଯନ୍ତ୍ରୀ
କାରେ ଗଗନେ ଗମନ କରନ୍ତି ।
କପର୍ଦ୍ଦୀ-ଯାନ— ମାନେ ହେଲେ ମତ୍ତ
କଳେ ଲୋଧ୍ରତରୁ କୁସୁମ ଜାତ ।
କୋରକତ ହେଲେ ଅଗସ୍ତି ଦ୍ରୁମ
କଳାକର ଖଣ୍ଡ ପ୍ରାୟେ ସୁଷମ ।

କୃପଣ ଲୋକର ଲୋଭ ପରାୟେ
କଷ୍ଟ ପାଇଲେ ଗୃଢକ ପକ୍ଷୀଏ ।
କମଳ-ମୋଦକ— କୁମାର ଦଶେ
କୁମ୍ଭମୁନିସୁତଙ୍କ ସ୍ୱଦରେ ଦଶେ ।
କେତେ କହିବ ଶରଦ ବର୍ଣ୍ଣନା
କହିଲେ ଅନେକ ହୋଇବ ସିନା ।
କମଳନୟନ ଦେଖିଲେ ଦନେ
କୁମୁଦ ବନ୍ଧୁ ଉଦୟ ଗଗନେ ।
କରିଅଛୁ ସବୁ ଦିଗ ଧବଳ
କମଳାୟୁ ଦଶେ ମହୀମଣ୍ଡଳ ।
କର୍ପୂର ମୋଡ଼ି ବସ୍ତୁଲ୍ଲ·ପରାୟେ
କି ଅବା ଛିଡ଼ି ହେଲା କ୍ଷୀରମୟେ !
କାହାର ଯଶ ପରକାଶ ହୋଇ
କେତେ ଶୁକ୍ଳକୁ ଦେଲା ଲଗୁଇ ।
କାଦମ୍ବକୁଳ ନୋହୁ ଦେଖାଦେଇ
କଳରବ କରି ହୁଅନ୍ତି ଦୁଃଖୀ ।
କୁଞ୍ଜର କୁଞ୍ଜ ନ ଥିଲା ପରାୟେ
କସାଇ ଜନ— ମନକୁ ସଂଶୟେ ।

*  *  *  *

# ଦ୍ରୌପଦୀ ବସ୍ତ୍ରହରଣ

## ୬ ଭୀମା ଧୀବର

( ରାଗ—ପାହାଡ଼ିଆ କେଦାର )

ଏହି କବିଙ୍କର ବାସସ୍ଥାନ ରେଢ଼ାଖୋଲରେ ଥିଲା । କବି କପଟପାଶା ଓ ଭରତ ସାବିତ୍ରୀ ରଚନା କରିଥିଲେ । ଏହାଙ୍କର ରଚନାର ଅନେକ ସ୍ଥାନରେ ଓଡ଼ିଶାର ଜାତୀୟ ଛନ୍ଦ ପ୍ରତିଫଳିତ ।

ସଭାରେ ଦୁର୍ଯ୍ୟୋଧନ ରାଜନ ଡାକିଲା ଆରେ ରେ ଦୁଃଶାସନ !
କର ଗମନ ଫେଡ଼ ଦ୍ରୌପଦୀ ଅଙ୍ଗୁ ବସନ ରେ

* * * *

କେମନ୍ତ କରି ଆଜ ରଖିବେ ଶ୍ରୀଭଗବାନ ରେ
ଏମନ୍ତ ଆଜ୍ଞା ଯନ୍ତୁଁ ଦେଲା ରାଜନ ହେ
ଶୁଣି ଉଠିଲା ଦୁଃଶା ପାମର ହୀନ ଯେ
କରେ ଜବୁଡ଼ି ଅଙ୍ଗୁ ବସନ କାଢ଼ଇ ଧୃତରାଷ୍ଟ୍ର ନନ୍ଦନ
ଖଣ୍ଡେ କାଢ଼ନ୍ତେ ଖଣ୍ଡେକ ପୁଣି ଦେଖେ ନୟନ ଯେ । ୧ ।
ଦେଖିଣ ଦୁଃଶାସନ ଚକିତ କହଇ ଦୁର୍ଯ୍ୟୋଧନ ଅଗ୍ରତ
ଭ୍ରେ ଦେବ ଶୁଣିମା ହେଉ ଭାନୁମତୀର କାନ୍ତ ହେ
ଦ୍ରୌପଦୀ ଅଙ୍ଗରୁ ବସ୍ତ୍ର ଏକ କାଢ଼ନ୍ତେ ଏକ ପୁଣି ଉଦତ
ଏ ଅଚମ୍ବିତ କଥା ତଦନ୍ତ ବୁଝ କେମନ୍ତ ହେ
ଶକୁନ ମୁଖ ଚାହିଁ ଗାନ୍ଧାରୀସୁତ ଯେ
ବୋଲଇ ମାମୁ କହ ଏଥି ତଦନ୍ତ ଯେ
ଶକୁନ କହେ ନୃପତିନାଥ ପଞ୍ଚପାଣ୍ଡବ ତାର ଗେରସ୍ତ
ପାଞ୍ଚଙ୍କ ପାଇଁ ପାଞ୍ଚପ୍ରକାର ପିନ୍ଧଇ ନେତ ହେ । ୨ ।

ଏମନ୍ତ କୂଟ କପଟ ବାଣୀ ପାଣ୍ଡୁ କହନ୍ତି ପଣ୍ଡୁ ଶକୁନି
ଶୁଣି ହରଷ ହୋଇଲେ କୁରୁକୁଳରାଜନ ଯେ
ଏହୁ ବଚନ ଶୁଣି ରାଜନ ଦୁଃଶାସନକୁ ଗୃହି ବୋଲେ ବଚନ
ଉଠ ବନ୍ଧନ ତ୍ୱରିତ ଯାଇ ଫେଡ଼ ବସନ ରେ
ଶୁଣି ତାହା ଦୁଃଶା ଉଠିଲା ତ୍ୱରିତ ଯେ
ପୁଣି କାଢ଼ିଲା ଅଙ୍ଗୁ ବସ୍ତ୍ର ବହୁତ ଯେ
ପ୍ରଥମ୍ ଖଣ୍ଡ ପକାନ୍ତେ କାଢ଼ି ଦ୍ୱିତୀୟ ଖଣ୍ଡ ଅଛଇ ଜଡ଼ି
ଏମନ୍ତେ କାଢ଼ି ପକାଇ ଯହି ଭୁବଇ ଶତ ଯେ । ୩ ।
ନଟବାରଙ୍କ ପର୍ଯ୍ୟେ ହୋଇ ଯେସନ ସତୀ-ମଢ ଭ୍ରମଇ
କୁମ୍ଭାର ଚକେ ମୃତ୍ତିକା ଦେଇ ଯେସନ୍ତେ ଭ୍ରମାଇ ଯେ
ପଞ୍ଚୁ ପାଟ ପଟନୀ ନେତ • ତଙ୍କ ଶୁକଳ ଅନେକ ବସ୍ତ୍ର
କୋଟିକି କୋଟି ବସନ ଦୁଃଶା 'କାଢ଼ି ପକାଇ ଯେ
ବସ୍ତ୍ର ଫେଡ଼ିଲା ବାର ଦ୍ୱାଦଶ ଘଡ଼ି ଯେ
ତାଟକା ହୋଇ ଅଉ ନ ପାରେ କାଢ଼ି ଯେ
ଅନାଇଥିଲେ କୁରୁରାଜନ ଦେଖିବ ବୋଲି ସତୀ-ବଦନ
ପଞ୍ଚିକି ଗୃହେଁ ତହିଁ ବସନ ଅଛଇ ଜଡ଼ି ଯେ । ୪ ।
ସଭାରେ ଥିଲେ ଗଙ୍ଗାନନ୍ଦନ ବୋଇଲେ ଶୁଣ କୁରୁରାଜନ
କେତେହେଁ ସ୍ଥାନମାନ କରୁଛ ନାରୀରଞ୍ଜନ ଯେ
ଯାହାକୁ ସାହା ଶ୍ରୀଭଗବାନ ତୁ କ ତାହାକୁ ଅଟୁ ଭଞ୍ଜନ
ଅନଳନେହେ ଗୃହିଲେ ତୁହି ହେବୁ ଦହନ ଯେ
ଆମ୍ଭ ବଚନ କର କୁରୁରାଜନ ଯେ
ନ କାଢ଼ ଅଉ ସତୀ-ଅଙ୍ଗୁ ବସନ ଯେ
ଭାନୁମତୀ ଯେ ତୋହର ପାଟ— ରାଣୀ ସେ କେତେ-ପିନ୍ଧିଛ ପାଟ
ଏ ଅଟେ ଗୋବିନ୍ଦଙ୍କ କପଟ ବୁଝ ରାଜନ ହେ । ୫ ।

ଏଷ୍ଟବଚନ-ଶୁଣି ରାଜନ    ଡାକଇ ଅରେ ରେ ଦୁଃଶାସନ ।
ନ ବାଢ଼ ବୃଷ୍ଣା-ଅଙ୍ଗୁ ବସନ ଘେନ ବଚନ ଯେ
ଦ୍ରୌପଦୀ ଦେବୀ କୁପିତମନ    କୁମ୍ଭଇ ଯଦ ଅଗ୍ନି ନୟନ
ଗୃହିଲେ ସବୁ ହେବେ ଦହନ ଅଜ୍ଞାନ-ଜ୍ଞନ ଯେ
ଲକ୍ଷଣ ଜାଉ ଦେବୀ ସଭା-ବଦନ ଯେ
ଭୁବନ୍ତ ବସିଛନ୍ତ ମୋ ଗୁରୁଜନ ଯେ
ପୁଣି ଶଳନ୍ତ ସର୍ବେ ପୁରୁଷ    ଏହାଙ୍କୁ ଯେବେ କରିବ ନାଶ
ଏଥିରେ ନ ଲଭିବ ମୁଁ ଯଶ କୁହିଁ ଏସନ ଯେ । ୬ ।
ଏରୁପେ ମନେ ମନେ ବଗ୍ଣ୍ଡର    ପ୍ରଳୟ ଅଗ୍ନି ନେଜ ବସ୍ତାର
ଗୃହାନ୍ତେ ଦୁର୍ଯ୍ୟୋଧନ ନବରେ ପଡ଼ିଲା ଯାଇ ଯେ
ପବନଘାତ ପାଇ ହୃତାଶ.    .ପୋଡ଼ିଲା ନଗ୍ର ପୁର ଭଅସ
ଦେବୀବଚନେ ସେ ରାଣୀହଂସପୁର ଦହଇ ଯେ
ସମସ୍ତ ନାରୀମାନେ ସଭୟ ହୋଇ ଯେ
ବ୍ୟସ୍ତେ ବସନ ତେଜ ଗଲେ ପଳାଇ ଯେ
ଭାନୁମତୀର ଅଙ୍ଗରେ ଅଗ୍ନି    ବେଢ଼ନ୍ତେ ବସ୍ତ୍ର ପକାଇ ଫେଢ଼
ପ୍ରାଣ ଭୟରେ ସଭାମଧ୍ୟରେ ମିଳିଲେ ପାଇ ହେ । ୭ ।
ସଭାରେ ଥିଲେ ବହୁ ରାଜନ.    ହସିଲେ ମୁଖେ ଦେଇ ବସନ
ଦ୍ରୋଣ ବୋଲନ୍ତ କୁରୁରାଜନ ବଚନ ଶୁଣ ହେ
ପରକୁ ଯେହୁ ଚିନ୍ତଇ ମନ୍ଦ    ତାହାର ମନ୍ଦ ଚନ୍ତେ ଗୋବନ୍ଦ
ଅନ୍ତକାଳରେ ସେହୁ ଲଭଇ ଅଛ କଷଣ ହେ
ତୁ ନୃପନାଥ ମନେ କଲୁ ଗରବ ହେ
ଗର୍ବଗଞ୍ଜନବାନା ପ୍ରଭୁ କେଶବ ହେ
ସଭାର ତଳେ ଦ୍ରୌପଦୀ ଅଣି    ବିବସ୍ତ୍ର କଲୁ ନୃପଚୂଡ଼ାମଣି
ତୋହର କୁଳବଧୂ ଉଲଙ୍ଗ ଦେଖିଲେ ସର୍ବେ ହେ । ୮ ।

ଏମନ୍ତ ଦ୍ରୋଣସୁତଙ୍କ ବାଣୀ ଶୁଣିଣ ସେହୁ ନୃପତମଣି
ଶୋକସମୁଖରେ ଲବଣ ଜାଣି ହେଲ ମଜନ ଯେ
ଜଗଶ୍ରମାନେ ବନ୍ଦନ ଯାଇ ଧୃତରାଷ୍ଟ୍ରର ଅଗ୍ରେ ଜଣାଇ
ଭୋ ଦେବ ଗ୍ରୁମ୍ଭ ଜ୍ୟେଷ୍ଠ ତନୟ ମହିମା ଶୁଣ ହେ
ଯୁଧିଷ୍ଠି ଦେବ ସଙ୍ଗେ ପାଶାରେ ମାତ ହେ
ରାଜ୍ୟ ଧନ ଭଣ୍ଡାର ସମସ୍ତ ଜିତ ହେ
ସଭାର ତଳେ ଦ୍ରୌପଦୀ ଅଣି ବିବସ୍ତ୍ର କଲ୍ ନୃପତମଣି
ଅନଳନେନେ ଗୃହାନ୍ତେ ସତୀ ପୁର ଦହନ୍ତ ଯେ । ୯ ।
ଶୁଣି ବୋଲଇ ଅନ୍ଧ ରାଜନ ମୋହର ବଂଶ ହେଲେ ନିଧନ
କୁଳବଧୂଙ୍କ ସଙ୍ଗରେ ଘେନି ଯାଏ ନରେଶ ଯେ
ହସ୍ତରେ ଘେନ ସୁବର୍ଣ୍ଣଥାଳୀ ସୁବେଶ ହୋଇ ଚଳଲେ ବାଳୀ
ଜୟ ଶବଦ ଦେଇଣ ହେଲେ ଦ୍ରୌପଦୀ ପାଶ ହେ
ବନ୍ଦାପନା କଲେ ମାନ୍ୟ ବିଶେଷ ହେ
ବୋଇଲେ ଦେବ । ଆଜ ନ କର ରୋଷ ହେ
ସାନ୍ତ୍ୱନା କରି ପୁରକୁ ନେଲେ ରତ୍ନପଲ୍ୟଙ୍କେ ଆସନ ଦେଲେ
ବିବିଧ ଉପହାରେ ତାହାଙ୍କୁ କଲେ ସନ୍ତୋଷ ଯେ । ୧୦ ।
ସେଠାରୁ ଦେବୀ ଗୌରବ ପାଇ • ରତନପଲ୍ୟଙ୍କରୁ ଓହ୍ଲାଇ
ଆନନ୍ଦମନେ ନିଜ ସଦନେ ବିଜୟ କଲେ ଯେ
ଅଗ ପଛରେ ଚଳନ୍ତ ଦାସୀ ପ୍ରବେଶ ହେଲେ ବାରୁଣୀ ଅସି
ଭିତରପୁର ରତ୍ନପଲ୍ୟଙ୍କେ ଯାଇ ବସିଲେ ଯେ
ଏ ଯେ କପଟପାଶା ଅମୃତରସ ଯେ
ସୁଜନଜନେ ଏହି ରସରେ ରସ ହେ
କୁହେଁ ମହନ୍ତ ଜାତି କୈବର୍ତ୍ତି ଶୁଦ୍ଧ ଅଶୁଦ୍ଧ ନ ଘେନ ଶଙ୍କ
ବହଇ ସ୍ୱାମୀ ପ୍ରଭୁଚରଣେ ସର୍ବଦା ଆଶ ହେ । ୧୧ ।

# ସିଂହଳ ବର୍ଣ୍ଣନା

## ୮ ଉପେନ୍ଦ୍ର ଭଞ୍ଜ

(ରାଗ—ପଞ୍ଚମ ମଞ୍ଜରୀ)

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ସପ୍ତଦଶ ଶତାବ୍ଦୀର ଶେଷ-ଭାଗରେ ଘୁମୁସର ରାଜବଂଶରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପିତାଙ୍କ ନାମ ନୀଳକଣ୍ଠ ଭଞ୍ଜ ଓ ପିତାମହଙ୍କ ନାମ ଧନଞ୍ଜୟ ଭଞ୍ଜ । ପ୍ରବାଦ ଅଛି—ଉପେନ୍ଦ୍ର ଭଞ୍ଜ ବାଣପୁରର ରାଜବଂଶରେ ବିବାହ କରିଥିଲେ । ରାଜକବି ନିସର୍ଗଦତ୍ତ କବିପ୍ରତିଭା ଓ ଅସାଧାରଣ ପାଣ୍ଡିତ୍ୟ ବଳରେ ଯେଉଁ ସବୁ ଗ୍ରନ୍ଥ ରଚନା କରିଅଛନ୍ତି, ତାହା ଉତ୍କଳସାହିତ୍ୟଭଣ୍ଡାରର ସମୁଜ୍ଜ୍ୱଳ ରତ୍ନ । ଭଞ୍ଜ କବିଙ୍କ ଗ୍ରନ୍ଥାବଳୀର ସମକକ୍ଷ ରଚନା ଭାରତର କୌଣସି ଉନ୍ନତ ସାହିତ୍ୟରେ ଦେଖାଯାଏ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ଭାଷା, ଭାବ ଓ ସାହିତ୍ୟର ଆଦର୍ଶ ତଦାନୀନ୍ତନ କବିମାନଙ୍କର ଅନୁକରଣୀୟ ହୋଇଥିଲା । ଏବେ ସୁଦ୍ଧା ଭଞ୍ଜକବିଙ୍କର କବିତାଝଙ୍କାର ଉତ୍କଳର ଗିରିଗହ୍ୱର, ଗ୍ରାମ ପ୍ରାନ୍ତର ସର୍ବତ୍ର ନିନାଦିତ ହେଉଅଛି । କି ସଂସ୍କୃତ ସାହିତ୍ୟ, କି ଜ୍ୟୋତିଷ, କି ଆୟୁର୍ବେଦ, କି ଦର୍ଶନ ସକଳ ବିଷୟରେ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । ଭଞ୍ଜକବିଙ୍କ ଦ୍ୱାରା ଯେ କେତେ ଗ୍ରନ୍ଥ ରଚିତ ହୋଇଅଛି, ତାହାର ଇୟତ୍ତା କରିବା କଠିନ । ପ୍ରକାଶିତ ୫୨ଖଣ୍ଡ ଗ୍ରନ୍ଥ ମଧ୍ୟରେ "ବୈଦେହୀଶ ବିଳାସ", "ଲାବଣ୍ୟବତୀ", "ପ୍ରେମ ସୁଧାନିଧି", "ରସିକ ହାରାବଳୀ" ଏବଂ "କୋଟିବ୍ରହ୍ମାଣ୍ଡସୁନ୍ଦରୀ" ପ୍ରଧାନ ।

ଶୁଣ ହେ ସୁଜନେ ରସ କର୍ଣ୍ଣ ମନଲୋଭ

ରତ୍ନାକର ମଧ୍ୟରେ ସିଂହଳ ଦ୍ୱୀପ ଶୋଭ ଯେ । ୧ ।

ବହୁବାର ନୋହେ ସେ କଟକ ଛଟକରୁ

ରତ୍ନ ଝଟକରେ ହସେ ଅନ କଟକରୁ ଯେ । ୨ ।

ଅଛନ୍ତି ଧନଦସମ ଧନବନ୍ତମାନେ

କର୍ଣ୍ଣେ ଶୁଣା ଅଛୁ ସମାନକୁ ଏକା ଦାନେ ଯେ । ୩ ।

କ୍ଷେତ୍ରେ କୋଟି ସୁବର୍ଣ୍ଣ ଯାହାକୁ ମିଳେ ତହିଁ

ତେତେ ଗୋଟି କଳଶ ସେ ମନ୍ଦିରେ ବସାଇ ଯେ । ୪ ।

ଗୋରୋଚନା ପ୍ରକାରେ ଯହିଁରେ ମୃଗମଦ

କାଠ ଖଣ୍ଡ ବସନକୁ ଯାଚନ୍ତି ପୁଲନ୍ଦ ଯେ । ୫ ।

କୁଙ୍କୁମ ଉକୁଟାଇ ହୁଅନ୍ତି ନାରୀ ଯହିଁ

ହରିଦ୍ରାରେ ଆଦର କରିବେ କାହିଁପାଇଁ ଯେ । ୬ ।

ମାର୍ଗ ମାର୍ଜନେ ରଜନକର ଅଣି ଯାଇ

ରଜନୀକର ଅଣନ୍ତି ଶକଟରେ ବହି ଯେ । ୭ ।

ହରିତକୀ ପାଇଁ ତଅରଲେ ବୈଦ୍ୟକୁଳ

ଭାରବାହେ ଭାରରେ ଅଣନ୍ତି ଜାତିଫଳ ଯେ । ୮ ।

ଶବରୀ ଶଙ୍କରୀ ଶେଯୁ ଅରଣ୍ୟକୁ ଯାଇଁ

ହର-ବଦାରଙ୍ଗ-କରି-ମୋତି ପଡ଼ିଥାଇ ଯେ । ୯ ।

ବଦରୀ ଆଦର ନେଇ ସରୋବରେ ଧୋଇ

ବଡ଼ା ତ ନ ଯିବ ବୋଲି ଅସନ୍ତି ପକାଇ ଯେ । ୧୦ ।

ଖଣ୍ଡପରଶୁଧାରଣ ପୁର ପରସ୍ତାରେ

ନ ଦହନ୍ତି ଶାମ୍ବୁକ ମୁକୁତା ବନ୍ଧାନରେ ଯେ । ୧୧ ।

ଯହିଁ ହେମ କମନୀୟ କମ କରେ ହୋଇ

ସେ ରହଣ ବାରବାନେ ଦ୍ରବ୍ୟପାତ ନାହିଁ ଯେ । ୧୨ ।

ଷିଶୁକାଷ୍ଠ ମେଧାବନ୍ତୀ ମଦନଶଲାକା
ଭକ୍ଷନ୍ତି ଲବଙ୍ଗ ନାଗବଲ୍ଲୀ ଦଳ ଏକା ଯେ । ୧୩ ।
ଏଣୁ କଣ୍ଠରୋଧ ବାଧଗ୍ଲାନ ଧବ୍ୟତାନ
ଶିଖି ବସ୍ତୁଚରିତ କରନ୍ତି ଭ୍ରମି ଗାନ ଯେ । ୧୪ ।
ଗଜହସ୍ତ ଉପଜୀବୀ ଭ୍ରମନ୍ତି କେଦାରେ
ମାଗ୍ରଗ ଜ୍ୟୋତିଷ କହି ଜବସ ମନରେ ଯେ । ୧୫ ।
ବାମକର ଗ୍ରହଣେ ଜାଣନ୍ତି ଯହିଁ ମିଛ
ଭାବନ୍ତି ଏଥୁ ପଥରେ କ ପଥର ସ୍ୱଚ୍ଛ ଯେ । ୧୬ ।
ବଜ୍ରକାଠ ବନା ଗଜ ନ ଅଣନ୍ତି ବନ୍ଧି
ଅଶ୍ୱଶାଳେ ବନ୍ଧା ନୋହେ ସିନ୍ଧୁକାଠ ବନ୍ଧୁ ଯେ । ୧୭ ।
ମୂଷିକରେ ନେପାଳୀ ପାଳନା ସୁଆଦରେ
ଗନ୍ଧମାର୍ଜାର ପୋଷିତ ବିଡ଼ାଳ ପଦରେ ଯେ । ୧୮ ।
ମାଳୀ ଅଳ ଦକ୍ଷିଣାବର୍ତ୍ତିକ ବନା କମ୍ବୁ
ନ ଘେନନ୍ତି ଦେବାକୁ ହରଚରଣେ ଅମ୍ବୁ ଯେ । ୧୯ ।
ଏକମୁଖୀ ରୁଦ୍ରାକ୍ଷ ଗ୍ରହଣ ଯୋଗୀ କରେ
ବାଳକେ କଣନ୍ତି ଦ୍ରାକ୍ଷା କେବଳ କୋଳରେ ଯେ । ୨୦ ।
ଖଡ଼୍ଗ ଚର୍ମ ଅଢ଼େଣୀ ଧାରଣର ପାଇ
ଖଡ଼୍ଗ ଚର୍ମରୁ ଆନ ଚର୍ମ ନ ପୋଗାଇ ଯେ । ୨୧ ।
ଯହିଁ ବ୍ରହ୍ମକାଠ ବଜ୍ରକବଚ ମିଳଇ
ବଜ୍ର କବଚରେ ଅନୁରାଗ ଥିବ କାହିଁ ଯେ । ୨୨ ।

* * * *

# ଜଟାୟୁ ଉକ୍ତି

୰ ଉପେନ୍ଦ୍ର ଭଞ୍ଜ

( ରାଗ—ବରାଡ଼ୀ, ଅଷାଢ଼ଶୁକ୍ଳ ବାଣୀ )

ବବେ ବସିଥିଲି ଧ୍ରୁବ ଉପରେ     ବସ୍ତୃ ପଦକୁ ଉଜଳି ଉତ୍ତରେ
ବଳକ୍ଷ ପକ୍ଷରୁ ଅଙ୍ଗରେ ବନ୍ଧୁ     ବନ୍ଦନ ସେ ତମନାଶନ ବନ୍ଧୁ
    ବକତା ଏ ଗିର,  ବଶ୍ରାମ ବାଞ୍ଛା କନ୍ଦବା ସୁନ୍ଦର । ୧ ।
ବଧୂଁ କାମ ଧର୍ମେ ଅଛୁ ଜୀବନେ     ବଧୂକାମବଶେ ଭ୍ରମ ଏ ବନେ
ବାଉନ୍ନୁଅଛୁ ଯେଉଁ ରମଣୀଙ୍କୁ     ବଶେଷ ଶୋକ୍ସ ତହୁଁ ରମଣୀ ଏ
    ବଂଶବାନ୍ଧୁ ରଥେ,  ବଲେକିଛୁ ଗଲା ଦକ୍ଷିଣ ପଥେ । ୨ ।
ବସପ୍ରସୂନ ଇନ୍ଦୁ ନିତ ଦେଖେଁ     ବଲକ୍ଷ୍ୟ ପ୍ରସନ୍ନ ନ ଥିଲା ମୁଖେ
ବାଷ୍ପ ହେଉଛୁ ନୟନୁ ଝନତା     ବୋଲନ୍ତ ମୀନ ଉଦ୍‌ଗାରେ ମୁକୁତା
    ବଳ୍କ ଜଣା ସେହୁ,  ବାରରେ ଲୁଚେ ଧର ଦର୍ଶେଁ ମୁହିଁ । ୩ ।
ବାସ ଚହଟି ଅଙ୍ଗୁ ଯାଉଥିଲା     ବେଢ଼ିଥିଲେ ଚିଥେ ଭ୍ରମରମାଳା
ବର୍ଣ୍ଣ ଝଟକ ବକୁଳରେ ନାହିଁ     ବାରିଦ ନିକଟେ ଦେଖିଛୁ ମୁହିଁ
    ବୀଣା କି ମଧୁର,  ବାହାରୁଥିଲା ଯେଉଁ ସ୍ତ୍ରୀମସ୍ୱର । ୪ ।
ବୋଲିବ ତୁ ବୀଣା ଶୁଣିଲୁ କାହୁଁ     ବାଜଇ ସପତ ସ୍ୱରରେ ସେହୁ
ବର୍ଷାରୁ ଧୈବତ ମୟୂର ଷଡ଼୍‌ଜ     ବନପ୍ରିୟରେଁ ପଞ୍ଚମ ସହଜ
    ବାଜୁଛୁ ମୋ କର୍ଣ୍ଣେ,  ବଧିରେ ଏଣୁପର ଅଉମାନେ । ୫ ।

* * * *

# ସୁଗ୍ରୀବଙ୍କ ସଙ୍ଗେ ମିତ୍ରତା

### ৺ ଉପେନ୍ଦ୍ର ଭଞ୍ଜ

(ରାଗ—ଦେଶାକ୍ଷ, ଚଉକେଳି ବାଣୀ)

ବୋଲେ ସୁଗ୍ରୀବେ ରାମ କ୍ଲେଶ ଭୂଷା
ବେନି ଜନେ ପଡ଼ିଛୁ ଏକ ଦଶା । ୧ ।

ବୈବସ୍ୱ ବଂଶେ ଜନ୍ମ ଅମ୍ଭର
ବଧିରେ ତ ତୁମ୍ଭେ ତାଙ୍କ କୁମର । ୨ ।

ବସୁଁ ଅଯୋଧ୍ୟା କିଷ୍କିନ୍ଧ୍ୟାରାଜନ
ବରୂଥରେ ବନେ ହେଲୁ ସଦନ । ୩ ।

ବାମାବଚ୍ଛେଦ ପକ୍ଷଧରେ ଷଣେ
ବଞ୍ଚୁ ଦିନ ଫଳମୂଳ ଭକ୍ଷଣେ । ୪ ।

ବଞ୍ଚୁଁ ଅନୁଜ ମନ୍ତ୍ରୀ ପ୍ରବୋଧନେ
ବୋଧ ହୋଇ ରହୁଥାଇଁ ଜୀବନେ । ୫ ।

ବାଧା ମାତା ଭ୍ରାତାରେ ଉପୁଜନ୍ତି
ବଇରୀଙ୍କ ସାଧିବା ଇଚ୍ଛା ଅଛି । ୬ ।

ବ୍ୟବହାରେ ମିତ୍ର ହେବା ଉଚିତ
ବୋଲେ ସୁଗ୍ରୀବ ଶୁଣ ରଘୁସୁତ । ୭ ।

ବୁଲି ଧରଣୀ ନିର୍ଭୟରେ ତୁମ୍ଭେ
ବାଳି-ଡରେ ଗିରିରେ ଲୁଚୁଁ ଅମ୍ଭେ । ୮ ।

ବଳବନ୍ତ ହେଲେ ଯଥା କେଶରୀ
ବଧେ ଗଜାଦି ଶରଭକୁ ଡରି । ୯ ।

ବନ୍ଧୁ ପାରିବ କେଉଁ ଉପକାର
ବୋଲ ମିତ୍ର ହେବା ତୁମ୍ଭ ଅମ୍ଭର । ୧୦ ।

ବୋଲେ ରଘୁବୀର ଶୁଣି ହନୁଙ୍କେ
ବନ୍ଧ ପକାଇବ ବାଳ ବାଣକେ । ୧୧ ।
ବ୍ରହ୍ମଲୋକେ ଥିଲେ ସୀତା ଖୋଜାଇ
ବାଦ ରଚନେ ଅଣିବ ସେ କାଣ୍ଡ । ୧୨ ।
ବୀର ଏରୂପ ମୋର ସଙ୍ଗେ ଅଛ
ବାଳଭଦ୍ର ଜନ୍ମୁଁ ଡେଇଁ ଧରଛ । ୧୩ ।
ବୋଲବୋଲ୍ ସେ ହୋଇ ଏତେ ମାନ
ବହ୍ନି ସାକ୍ଷୀ କରାଇ ହେଲେ ମିତ୍ର । ୧୪ ।
ବୋଲନ୍ତି ଶତ୍ରୁକୁ ଦେଖାଅ ରାଘବ
ବୋଲୁଅଛ ସବନପ୍ରେ ସୁଗ୍ରୀବ । ୧୫ ।
ବନ୍ଧବାକୁ ଇଚ୍ଛା ଯେବେ ବାଳକ
ବଳ କଷ ଦୁନ୍ଦୁଭି ଅସ୍ଥି ଠେକ । ୧୬ ।
ବଜେ ରାମ ଶୁଣି ସେ ସନ୍ନିଧିର
ବୃଦ୍ଧାଙ୍ଗୁଳି କ ବାମ ଚରଣର । ୧୭ ।
ବନ୍ୟସ୍ତ ଯେ କଲେ ଅସ୍ଥି ଗିଡ଼ରେ
ବନରୁଦ୍ଧେ କରିବର ପଡ଼ରେ । ୧୮ ।

* * * *

# କଳାକଳେବର ଚଉତିଶା

୰ ଭକ୍ତଚରଣ ଦାସ

(ରାଗ—ରାମକେରୀ)

ଏହି କବି ୧୭୨୯ ସାଲରେ ଜନ୍ମଗ୍ରହଣ କରି ୧୮୧୩ ସାଲରେ ଦେହତ୍ୟାଗ କରିଥିବାର ଅନୁମାନ କରାଯାଏ । ରଣପୁର, ଖୋରଧା ଓ ବାଣପୁରରେ ତାହାଙ୍କର ଗୃହ ଗୋଟି ମଠ ରହିଅଛି । ଏଥି ମଧ୍ୟରୁ ରଣପୁରର ସୁନାଖଳା ନାମକ ଗ୍ରାମରେ ଥିବା ମଠରେ କବି ବହୁକାଳ ଅତିବାହିତ କରିଥିଲେ । କବି ପଦବ୍ରଜରେ ଭାରତର ବହୁ ତୀର୍ଥ ପର୍ଯ୍ୟଟନ କରିଥିବାର ପ୍ରସିଦ୍ଧି ଅଛି । କବିଙ୍କ ରଚିତ "ମଥୁରାମଙ୍ଗଳ" ସମଗ୍ର ଉତ୍କଳଖଣ୍ଡରେ ସୁପରିଚିତ । କବିଙ୍କର ଭାଷା ସରଳ, ଓଜସ୍ୱିନୀ ଓ ହୃଦୟଗ୍ରାହୀ । ସେଥିପାଇଁ ତାଙ୍କର "କଳାକଳେବର ଚଉତିଶା" ଓ "ମନବୋଧ ଚଉତିଶା" ଉତ୍କଳର ଘରେ ଘରେ ଗୀତ ହୁଏ ।

•

କଳାକଳେବର କହ୍ନାଇ ସଙ୍ଗେ ରୋହିଣୀସୁତ
କରନ୍ତି ମଥୁରା ବିଜୟେ ଦାଣ୍ଡେ ଦେଖି ସଙ୍ଗାତ ।
ଖସି ପଡୁଛି କି ଆକାଶୁଁ କି ଏ ଗଙ୍ଗା ଯମୁନା
ଖୀର ସଙ୍ଗେ ପ୍ରାଣ ଶୋଷିଲେ ନାଶ ଗଲା ପୁତନା ।
ଗହନ କାନନ ବନରେ ଘୋର ବରଷା କାଳ
ଗିରି ବାମ କରେ ଧଇଲେ ନନ୍ଦଯଶୋଦାବାଳ ।
ଘରେ ନ ରହନ୍ତି ଗଉଡ଼େ ବଡ଼ ଅଧମ ଜାତି
ଘେନି ବତ୍ସାବୃନ୍ଦ ବାଳକେ ବନେ ବୁଲନ୍ତି ନିତି ।

ଉଇଁ ଅଛନ୍ତି କ ପୂର୍ଣ୍ଣିମା ଶଶୀ ମଧୁସାଗରୁ,
ଉଠ ମଧୁପୁର ଯୁବତୀ ଓଗାଳିବା ଅଗରୁ ।

*　*　*　*

ଝୋପି ଝୋପି ଗୋପୀ ଚନ୍ଦନ ମଣ୍ଡିଛନ୍ତି କ ସଙ୍ଗେ
ଟେକ ବାରେ ଗୁହାଁ ମଥୁରାଦାଣ୍ଡେ ଗୋବିନ୍ଦ ବଙ୍ଗେ ।
ଠାବେ ଠାବେ ଗୋଳ ଚହଳ ବାଜେ ଶିଙ୍ଗା ବଇଁଶୀ
ଠିଅହୋଇ ଭକ୍ତଦାସ ତା ଦାଣ୍ଡେ ଦେଖନ୍ତି ଅସି ।
ଡାକନ୍ତି ଏକକୁ ଆରେକ ଅସ ଜୀବଜୀବନ
ଡୋଳାରେ ଏରୂପ ଦେଖିବା ବଙ୍କେ ମଧୁସୂଦନ ।

*　*　*　*

ଅଳଙ୍କାରେ ସବୁ କାଇଁଚ ମଣ୍ଡଛନ୍ତି କ କରେ
ଅଣହେଲା ପାଉଥିବେ ଗୋ ନନ୍ଦଗଉଡ଼ ଘରେ ।
ଢଳଢ଼ ଉପରେ କସ୍ତୁରୀ ଗୋରୋଚନା ରଞ୍ଜିଛୁ
ଢେରଛର ଗୃହିଦେବାରୁ ତରଲାଇ ଦେଉଛୁ ।

*　*　*　*

ଦୁଃଖୀ ଲୋକଙ୍କର ସଙ୍ଖାଳ ସେ ତ ଦରିଦ୍ରଧନ
ଦଧିଦୁଧସରଖିଆ ଗୋ ଡେଣୁ ବଙ୍କ ଲବଣ୍ୟ ।
ଧରଣୀ ମଣ୍ଡିଲ୍ଲ ପରିଯ୍ୟେ ହୋଇଛନ୍ତି କ ଉଣ୍ଡା
ଧଳା କଳା ବେନ ଭାଇ ଗୋ ଦୁହେଁ ଦୁହିଙ୍କି ଶୋଭା
ନାସାବଞ୍ଚା ଅପ୍ରଛଅଣି ସେ ଗୋ ଯଶୋଦାପୁତ
ନ କଲ୍ଲ ଦାଇବ ନରେନ୍ଦ୍ର ଘରେ ଏ ପୁଅ ଜାତ ।
ପୁଅ ହୋଇ ଏଡ଼େ ସୁନ୍ଦର ନାହିଁ କାହାର ଘରେ
ପାହୁଲ୍ଲ କ ଯୋଗେ ରଜନୀ ଅଜ ମଧୁନଗରେ ।

*　*　*　*

# କଂସର ଚିନ୍ତା

৺ ଭକ୍ତଚରଣ ଦାସ

( ରାଗ—ବଙ୍ଗଳାଶ୍ରୀ )

ଲେଖିଅଛି କଂସ ହୋଇ ମହାଶ୍ରେଷ୍ଠ ଅଛେ ଗୋପପତି ନନ୍ଦ
ଅଙ୍କପ୍ରମାଣେ ତତକାଳେ ଆସିବୁ ନୋହିଲେ ଛେଦିବି କନ୍ଧ ।୧।

ଜାଣୁ ତ ମୋର ବଳ ବୀର୍ଯ୍ୟ ଯେତେକ ଅରିକୁଳକୁ କେତୁ
ପ୍ରଚଣ୍ଡରେ ଘଣ ତେଜ ରଣରଙ୍ଗ— ପୁଣ ହର୍ଷେ ଲଭନ୍ତି ମୃତ୍ୟୁ ।୨।

କୋପ କଲେ ମହୀ ଦୋହଲି ଉଠଇ ମେରୁ ହୋଏ ଥରହର
ରଣ ଦେଲେ ଜନ୍ତୁପକ୍ଷୀ ଭସ୍ମ କରେ ଥଉମାନେ କେତେ ଛାର ।୩।

ବଧା ଘାତେ ଚନ୍ଦ୍ରକୁ ଲୁଧରଙ୍କୁ କରିପାରଇ ମୁଁ ଚୂନା
ଅଭିବ-ଜବସଲ-ବାନା ବହଇ ଶରଣକୁ ବଜ୍ରସେଣ୍ଡା ।୪।

ଦାନପଣକୁ ସୁନାସୀର ପଶଏ ଟଙ୍କାରପଣେ ଜଳଧି
ପଣ୍ଡିତପଣେ ଦେବଗୁରୁ ହାରଇ ବେଦ ବେଦାନ୍ତରେ ବିଧି ।୫।

ଧାର୍ମିକପଣେ କେହି ସମ ନୁହନ୍ତି ପରଜାପାଳନେ ତାତ
ମୋର ଦେଶରେ ଭସ୍ମ କରି ପ୍ରଚଣ୍ଡ ହୋଇ ନ ବହଇ ବାତ ।୬।

ଅଗ୍ନି ଦେବତା ଶିଖାମାନ କଉନ ଦେଖି ମୋର ତେଜବଳ
ସୁଜନ ରଖି ଦୁର୍ଜନକୁ ମାରଇ ଏ କଥା ତୁମୋହର ମୂଳ ।୭।

ଗଡ଼ ଦେଖି ବଡ଼ ଖର୍ଗୀମାନେ ଅଡ଼ ହୁଅନ୍ତି ବହୁତ ଦୂରୁ
କଟକାଇ କଲେ ଅମରେ ପଳାଇ ଯାଆନ୍ତି ଅମରପୁରୁ ।୮।

ଯାଦବକୁଳ ବୃନ୍ଦାବନ ପ୍ରାଏ ମୁଁ ତହିଁକି କଣାମଣି
ସୁନ୍ଦରପଣେ କାମ ସରି ନୁହଇ ସହିବାପଣେ ଧରଣୀ ।୯।

ଯୁଦ୍ଧ ନ କରି ଯୋଦ୍ଧାମାନ ଜିଣିଲି    ବ୍ରହ୍ମାଣ୍ଡ ହୋଇଲା ମୋର
ଏହିଠାରେ ଥାଇ ଦର୍ଶନେ ନ ଅସୁ    ଏଡ଼େ ଗାରିମା ତୋହର ।୧୦।

ରଢ଼ି ଗୋଠାକେ ସର୍ବ ଜନ୍ତୁ ମରିବେ    ଛନ ପୁରେ ଥିବେ ଯେତେ
ଦୟା କରି ତାଙ୍କୁ ଶରଣ ଦେଇଲି    ଯେଣୁ ଆଶ୍ରେ କଲେ ମୋତେ ॥

ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ ସଙ୍ଗେ ଅଷ୍ଟଭୁଜ    ସମସ୍ତେ ମୋହର ବଶ
ମହାଦୁଷ୍ଟମାନେ ଛାଡ଼ି ପଳାଇଲେ    ଶୁଣି ମୋର ବୀରଘୋଷ ।୧୨।

ଛାର ରାଜଡ଼ି ଅଟୁ ତୁ ଏତେ ମୂଢ଼    ନ ଦେଇ ମୋହର କର
ଦେବ ଯେବେ ଧାଏ ରଖିବ କି ବାପ?  ଅନଳେ ଦହିବ ପୁର ।୧୩।

ଶଶୁର ଯାର ଜରାସନ୍ଧ ଦଇତ    ସଖା ଯାର ବୀରକେଶୀ
ଏକା ନିମେଷକେ ଚରାଚର ମହୀ    ପକାଲୁ ପାରଇ ଧ୍ୱଂସି ।୧୪।

ଶୂର ନାରକା, ବ୍ୟୋମା, ଅଘା, ପ୍ରଲମ୍ବା, ବକଦମ୍ବା, ଦୁର୍ବନ୍ଧ ବୀର
ଚାଣୁର, ମୁଷ୍ଟିକ, ଶଲ୍ୟ ଆଦମାନେ    ଅଛନ୍ତି ମୋ ହକ୍ରକାର ।୧୫।

କେବଳ ଶିଶୁପ-କୁସୁମକୁ ମହା—    ପ୍ରଳୟ ବରଷା ଲେଖି
ସେହି ପ୍ରାୟେ ମୁହିଁ, ସେହି ପ୍ରାଏ ତୁହି,  ଶିଶିରେ ଯେ ଯିବୁ ସଡ଼ି ।୧୬।

ଏବେ ମୋର ଧନୁଭଞ୍ଜବ ହୋଇଛି    ସମ୍ଭାର ଘେନାଇ ଆସ
ସମସ୍ତ ଦୋଷ ତୋର କ୍ଷମା ହୋଇଲା.  ମନେ ନ କରିବୁ ହାସ ।୧୭।

ସମ୍ଭାର ଦଧି ଶତେ ଭାର ଘେନାଇ    ଗୋଷ୍ଠିଙ୍କୀ ଅଧାମ ଆଦ
ସଙ୍ଗେ ଗୋପ ଦଶ ପଞ୍ଚାଶ ଅଣିବୁ    କରିବେ ସେ ଯାହାବଧି ।୧୮।

ରାମ କୃଷ୍ଣ ବେନି ଭାଇଙ୍କି ଅକ୍ରୁର    ସଙ୍ଗେ ସଙ୍ଗ କରିଦେବୁ
କେଡ଼େ ହେଲେଣି ତୋର ବେନି ନନ୍ଦନ ତାହାଙ୍କୁ ଅମ୍ଭେ ଦେଖିବୁ ।୧୯।

ସେହି ଦେଖିବେ ମହା ଧନୁଜଞ୍ଜବ    ଶୁଭ କଥା ସିନା ତୋତେ
ବଡ଼ଲୋକ ସଙ୍ଗେ ସଙ୍ଗ ହୋଇ ଯିବେ   ଭୟ ନ ରହିବ ଚିତ୍ତେ ।୨୦।

ବୃଦ୍ଧ ଶରୀର କେତେ ଦିନ ବଞ୍ଚିବୁ, ମିଥ୍ୟା ମାଟି କଳେବର ।
ଛାଡ଼ ଥାଉଁ ଥାଉଁ ତୁମର ବେନିଙ୍କି ଅମ୍ଭରେ ପରବେ କର ।୨୧।

ଶାଢ଼ୀ ବନ୍ଧାଇ ରାଜନପଣ ଦେଇ ସୁଖେ ଗୃହେ ବସିଥାଅ
ଅମ୍ଭର ଯେତେ ହାନିଲାଭ ହୋଇବ କରବେଂ ଛାଡ଼ର ପୁଅ ।୨୨।

ଜାଣି ପାରୁଲେ ଧନୁପୂଜା ହୋଇବ ଅଳସ ନ କର ଆସ
ଏମନ୍ତ ବୋଲି ଚିଠାଉ ଲେଖିଅଛି ପଢ଼ି ନନ୍ଦ ହେଲେ ତୋଷ ।୨୩।

ବସ୍ତ୍ରସୂତଉରେ ହୃଦସୂଭିତରେ କଲେ ମହାଘୋର ସ୍ୱେଛ ।
ଯହିଁ ଶୁଣିଲେ ମଥୁରା ଯିବେ ଦୂତ ସଙ୍ଗେ ରାମ ଶିରୀପଢ ।୨୪।

ପରିଜନ ରାଇ ବୋଲେ ଗୋପସାଇଁ ଗୋପରେ ଘୋଷଣ ଦିଅ
ଜାଣି ପାରୁଲେ ମଥୁରାପୁର ଯିବେ ସମ୍ଭାର ସଜାଡ଼ିଥାଅ ।୨୫।

ଏତେକ ଭାଷି ଅକ୍ରୁରଙ୍କୁ ଚରନ୍ତୁ କରଇ ବରଜରାଜା
ବୋଲେ ବଇରାଗୀ ଭକତଚରଣ ଗୋପରେ ବାଜଇ ବାଜା ।୨୬।

# ଗୋପୀଙ୍କ ଖେଦ

୰ ଭକ୍ତଚରଣ ଦାସ

( ରାଗ—ବଳାସମଞ୍ଜରୀ )

ଦାଣ୍ଡରେ ଶୁଣିଲୁ ରାମ    କୃଷ୍ଣ ବେନି ଭାଇ
ଅକ୍ରୂର ଆସିଛି ତାଙ୍କୁ    ଧରି ନେବାପାଇଁ
ରାଜା ପରଜା ସହିତେ
ସଜ ହୋଇଥାଅ କାଲି    ଚଳିବା ପ୍ରଭାତେ । ୧ ।
କରିଛି ଧାନୁକପୂଜା    କଂସ ବୀରମଣି
ଆସିଛନ୍ତି ଅନେକ    ଦେଶରୁ ନୃପମଣି
ତାହା ଦେଖିବାର ପାଇଁ
ଏଣୁକରି କଂସ ଦୂତ    ଅଛି ପଠାଇ । ୨ ।
ଶୁଣି ଗୋପପୁର ଜନେ    ହୋଇଲେ ଅରତ
ବଜ୍ର ବାଜି ଥାବର    ହୁଅଇ ଯେସନେ ପାତ
ସେହିମତ ହେଲେ ଗୋଈ
ଏକକୁ ଅନେକ ବୋଲେ    କି କରିବା ସହି ? ୩ ।
ପାଞ୍ଚ ସାତ ମେଳ ହୋଇ    କରନ୍ତି ବିଚାର
କୃଷ୍ଣ ବିନୁ ପରାଣ    ଧରିବ କାହା ଭର
କଷ୍ଟେ ହୋଇବ ମରଣ
ଯେତେବେଳେ ଗୋପ ତେଜି    ଯିବେ ନାରାୟଣ । ୪ ।
କେ ବୋଲଇ ମରଣ    ଅମ୍ଭଙ୍କୁ ପଛେ ହେଉ
ମଥୁରା ନ ଯାଇ କୃଷ୍ଣ    ଗୋପପୁରେ ଥାଉ
କଥା ଉହନ୍ତା ସସାରେ
ପ୍ରାଣ ଦେଇଛନ୍ତି ଗୋପୀ    ଶ୍ରୀକୃଷ୍ଣଆଶାରେ । ୫ ।

କେଉଁ ଏଣୀଦୃଶୀ ଦୃଷ୍ଟି      କରଇ ସେବନ
କାଲିଠାରୁ ଫୁଟିଯିବ      ଏ ବେନି ନୟନ

ଅନ୍ଧ ହୋଇ ବସିଥିବା

ଅକ୍ରୂର ହସ୍ତରେ ଯେଣୁ      ବେନି ଚକ୍ଷୁ ଦେବା । ୬ ।

କେ ବୋଲଇ କାଲିଠାରୁ      କୁମୁଦ ମରିବେ
କୁମୁଦରମଣ ଯେଣୁ      କୁମୁଦକୁ ଯିବେ

ଅନ୍ଧକାରକୁ ବାଢ଼ିବ

ସତେ କି ଚନ୍ଦ୍ରମା ଚନ୍ଦ୍ର—      ମଣିକି ଛାଡ଼ିବ ? ୭ ।

କେଉଁ କରୀନ୍ଦ୍ରଗମନା      ନୟନୁ ଲୋତକ
ଲୁଚିକି ଅନାଇ କ୍ରୋଧେ      କହଇ ଅନେକ

ଅମ୍ଭ ସଙ୍ଗେ ଦ୍ୱନ୍ଦ୍ୱ ହେବୁ

ଦୂଷଣ ବଚନେ ଅଙ୍ଗ      ଅଶୋଭ ଦଶିବୁ । ୮ ।

କେ ବୋଲେ ଯମୁନା—      ଗର୍ଭେ ଜୀବନ ହାରିବା
ଦାରୁଣ କଂସ ନୃପତି      ନାମରେ ମରିବା

ସ୍ତ୍ରୀସ୍ୱହତ୍ୟା ଦୋଷ ପାଇ

ସୁଖୀ ଶିଶୁ ଛାଡ଼ି ନିଜ      ଜୀବନ ହରାଇ । ୯ ।

କେ ବୋଲଇ ଭୋଜପତି      ଅମ୍ଭ ଅସ୍ତ୍ର ନେଇ
ଅମ୍ଭେ ମରୁଁ, ଅମ୍ଭ କୃଷ୍ଣ      ଗୋପପୁରେ ଥାଉ

ଏହା କରୁ ଗୋ ଦଇବ

କେ ବୋଲେ ଏମନ୍ତ ସଖି । କେବେହେଁ ନୋହିବ । ୧୦ ।

କେଉଁ ପ୍ରେମଶୀଳା ଲୀଳା      ବାହୁନି କାନ୍ଦଇ
କେହୁ କାହା ଗଳେ ବାହୁ      ଅରଡେ ଛନ୍ଦଇ

କେହୁ ଧରଣୀରେ ପଡ଼େ

କେହୁ ନିଜ ଭୁଜ ନେଇ      ହୃଦୟରେ କୋଡ଼େ । ୧୧ ।

ନିଶ୍ୱାସ ପକାଇ କେହୁ ଧୁଅଇ ସ୍ତକତ
ହା ଗୋବିନ୍ଦ ବୋଲି କେହୁ ହୋଏ ମୂର୍ଚ୍ଛିତ
କେହୁ ବୋଲେ ନନ୍ଦ ବାଇ
କେ ବୋଲେ ଯଶୋଦା କପାଁ ନ କହେ ଭଙ୍ଗାଇ ? ୧୨ ।
ଏହା ଶୁଣି ସାରଣୀ କହଇ ପ୍ରଢବାଣୀ
ଏଥିର ବସ୍ତର ସଖି ! ଅଛଇ ମୁଁ ଜାଣି
ମଧୁପୁର ନାରୀମାନେ
ଜାଣନ୍ତି ଭେଳକି ମନ୍ତ୍ର ଭୁଲାନ୍ତି ଲୁଣ୍ଠନେ । ୧୩ ।
ଅକ୍ରୁର ହସ୍ତରେ ଔଷଧି ଦେଇଛନ୍ତି
ତେଣୁ ନନ୍ଦ ଯଶୋଦା ବଚନ ନ କହନ୍ତି
ସତ୍ୟ ଏ ମୋର ବଚନ
ଏହା ଶୁଣି ହେମମାଳା କରଇ ରୋଦନ । ୧୪ ।
ଏମନ୍ତ ହୋଇଲେ ସଖି ! ବୁଡ଼ିଲା ମୋ ଭେଳା
ଗଲେ କି ଆସିବେ ଆଉ ଯଶୋଦାଙ୍କ ବଳା
ଧାତା ଛଡ଼ିଲା ନିଯୁତ
କେମନ୍ତେ ବଞ୍ଚିବେ ତାଙ୍କ ବୃଦ୍ଧ ତାତ ମାତ ? ୧୫ ।
ଏତେ କହୁ ବ୍ରଜ ଗୋଷ୍ଠ ନନ୍ଦପୁରେ ମିଳି
ଦେଖିଲେ ଅକ୍ରୁର ନନ୍ଦ ରାମ ବନମାଳୀ
ବସି କରନ୍ତି ବସ୍ତର
ସଜାଡ଼ନ୍ତି ଶଗଡନେ ଯିବାର ସମ୍ଭାର । ୧୬ ।
କୃଷ୍ଣଙ୍କୁ ଅନାଇ ଗୋପୀ ବୋଲନ୍ତି ବଚନ
ଅକ୍ରୁର କାହିଁକି ଗୋପେ କରିଛି ଗମନ
କପାଁ ବାଜଇ ବାଜଣା
ଗୋରସରେ କାହିଁପାଇଁ ପୂରିଛି ଅଗଣା ? ୧୭ ।

ବରଜ ବୋଲନ୍ତି ଶୁଣ ବରଜ-ଚନ୍ଦ୍ରାସ
ଅକ୍ରୂରକୁ ବରଗିଛ କଂସ ଦଣ୍ଡଧାସ
ସମ ସଙ୍ଗେ ମୋତେ ନେବ
ଭଲ ମନ୍ଦ କି ହୋଇବ ଜାଣଇ ଦଇବ । ୧୮ ।
ପିତା ମାତା ଆଦକର ନେବ ମଥୁରାକୁ
କାଲି ଯିବୁ ରଥେ ବସି ସ୍ୱଜା ଦେଖିବାକୁ
ଧନୁଭଞ୍ଜବ ଦେଖିବୁ
ଦନା ଦୁଇ ସ୍ୱଭ ରହ ଲେଉଟି ଆସିବୁଁ । ୧୯ ।
ଶୁଣିଲେ ଗୋପରମଣୀ ରମଣବଚନ
ଚନ୍ଦ୍ରା-ଚନ୍ଦ୍ରାକରେ ବୁଡ଼ିଗଲା ମନମୀନ
କହେ ଭକ୍ତଚରଣ
କୃଷ୍ଣଗୁଣ ଗୁଣି ଗୋପୀ କରନ୍ତି କାରୁଣ ।୨୦।

## ଯଶୋଦାବିଳାପ

୬. ଭକ୍ତଚରଣ ଦାସ

( ସ୍ୱଗ—ବସନ୍ତ, ବାଦ୍ଧଜାବସନ୍ତ ବୃତ୍ତ )

ଅରେ ବାବୁ ଶ୍ୟାମଘନ ! ତୁ ଗଲେ ମଧୁଭୁବନ
କାହା ମୁଖ ଅନାଇ ବଞ୍ଚିବ
ହେବ ଦଶ ଦଗ ଶୂନ୍ୟ ଅଥିର ହେବ ଜୀବନ
କିଣିଦବସରେ ଝୁରୁଥିବ ରେ ଜୀବଧନ !
ଜୀବନ ବହୁନେ ଯେସନ୍ତେ ହଂସ
ସ୍ୱଜା ବନେ ଯେସନ୍ତେ ଗ୍ରାମ ଦେଶ ରେ । ୧ ।

କାହି! ଅଙ୍ଗେ ଚନ୍ଦ୍ରସମ ଲେପିବ କରି ସୁଷମ
ନିଦ୍ରାରେ କେ ହେଉଥିବ ଧାରି
କାହାକୁ ଅଞ୍ଜନ ଦେବ ବସ୍ତ୍ର ପାଡ଼ ଶୁଖାଇବ
ପିତାଙ୍କୁ ମାଗିବ କେହ୍ନୁ ହରି ରେ ଜୀବଧନ !
ଏ କଥା ସୁମରି ଯିବ ମରି
ନଷ୍ଟେ ଯେବେ ଯିବୁ ମଧୁପୁରୀ ରେ । ୨ ।

ବାନ୍ଧିବ କାହାର କେଶ କୁସୁମେ କରି ସୁବେଶ
କାହା ଲଲାଟରେ ଦେବ ଚିତା
କାହାର କର୍ଣ୍ଣେ କୁଣ୍ଡଳ ଖଞ୍ଜିବ ରେ ମୋର ବାଳ !
କାହାପାଇଁ କରୁଥିବ ଚିନ୍ତା ରେ ଜୀବଧନ !
କାହା ଅଙ୍ଗୁ ଧୂଳି ଦେବ ପୋଛି
କାହାକୁ ବା ପିନ୍ଧାଇବ କାଛି ରେ ? ୩ ।

ଯେତେବେଳେ ବନେ ଯାଉ ସଙ୍ଗରେ ମୋ ପ୍ରାଣ ନେଉ
ନିମିଷେ ବିଚ୍ଛେଦ ନ ସହଇ
ଏବେ ଯିବୁ ମଥୁରାକୁ ମୋତେ ସମର୍ପି କାହାକୁ
ଚନ୍ଦ୍ରମୁଖ ନ ଦେଖିଲେ ମୁହିଁ ରେ ଜୀବଧନ !
ଜୀବନ ହାରିବ ଗଣ୍ଡଜଳେ
ତୁ ମୋତେ ଅନ୍ତର ହେଲେ ଢଳେ ରେ । ୪ ।

ସର ଲବଣୀ ଅଧାମ ପକ୍ୱ ରମ୍ଭା ସୁଧା ସମ
ମୁଖେ ଦେଲେ ଥୂ-ଥୂ କରି ଫିଙ୍ଗୁ
ଯେତେରୂପେ ନାଳଅଇ ପରପର କଳଅଇ
କୋପେ ଉଠି ପାକଭାଣ୍ଡ ଭଙ୍ଗୁ ରେ ଜୀବଧନ !
ଏବେ ଭୁଲି ହୋଇବ ସେ କଥା
କି ନ କରେ ଦାରୁଣ ବିଧାତା ରେ । ୫ ।

ଛାଇଁକି ଅନାଇ ଡରୁ ଧାଇଁ ମୋତେ କୋଳ କରୁ
ବସନେ ଘୋଡ଼ାଇ ମୁଖଗୋଟି
ହୋଇଥାଇ ଥରହର ଦେଖିଲେ ଅନ୍ଧାର ଘର
ଜଳ ପାବଚ୍ଛ ନ ପାରୁ ଉଠି ରେ ଜୀବଧନ ।
ମଧୁପୁରେ ହସ୍ତୀ ଘୋଡ଼ାମାନ
ଗର୍ଜିଲେ ନ ପୁଣ ଡରୁ ଶ୍ୟାମ ରେ । ୬ ।
କାଳେ ଦେଖି ଛନ୍ଦପନ୍ତ ନାନା ଭୟଙ୍କର ମୂର୍ତ୍ତି
ଭୟେ ଯାଇ ସେ ଘରୁ ପଳାଇ
ଏବେ କଂସପୁର ଯିବୁ ରାକ୍ଷସମାନ ଦେଖିବୁ
ଡର କାହାକୁ ଧରିବୁ ଧାଇ ରେ ଜୀବଧନ ।
ମାଏ ବୋଲି ଡାକିବୁ କାହାକୁ
ସାହା ବା କେ ଅଛି ବୋଲିବାକୁ ରେ ? ୭ ।
କଣାକାଳେ ମୋର କୋଳେ ଶୋଇଥାଇ ଶ୍ରମବଳେ
ସ୍ୱପନରେ ଦେଖି କସ କସ
ମା ବୋଲି ଚମକି ପଡ଼ୁ କଣ୍ଠେ ଦୁଇ ଭୁଜ ଭଡ଼ୁ
ପୁଣି ଶୋଇ ଘୋଡ଼ି ହୋଇ ବାସ ରେ ଜୀବଧନ ।
ସେ କଥା ସୁମରି ମରିଯିବ
ଉଠ ବୋଲି କାହାକୁ ଡାକିବ ରେ ? ୮ ।

* * * *

# ମଲ୍ଲ ଯୁଦ୍ଧ

୰ ଭକ୍ତଚରଣ ଦାସ

( ରାଗ—ଅହାରୀ )

କୃଷ୍ଣ ଚାଣୁର ସମର ଦୁରୁତର   ଥର ଥର ଧରା ହୋଇଲା
କୃଷ୍ଣ ବଳବୀର୍ଯ୍ୟ ଜାଣି ନିଶାଚର   ଚିତ୍ତରେ ମରଣ ହୋଇଲା
କାହ୍ନିକ, କଲଟି ରାଜନବଚନ
ହରିକୋପାନଳ ଅଛନ୍ତି ପ୍ରବଳ ଦହିବ ମୋ ତୃଣ ଜୀବନ । ୧ ।
ଏତେବେଳେ ଯେବେ ନିସତ ହୋଇବି ନିନ୍ଦା କରିବେ ରାଜାମାନେ
ସମରେ ଜୀବନ ହୋଇଲେ ନିଧନ   ସୁଖେ ବସିବି ସ୍ୱର୍ଗସ୍ଥାନେ
ଏମନ୍ତ, ଭଲ କରେ ଗାଢ଼ ସମର
ମୁଷ୍ଟିକ ମୁଷ୍ଟି ପଡ଼ତାଳ କରନ୍ତେ ଶବଦେ କମ୍ପେ ଛନ ପୁର । ୨ ।
ବାହେ ବନ୍ଧାବନ୍ଧ ମୁଣ୍ଡେ କୋଡ଼ାକୋଡ଼ ହସ୍ତୀକୁ ହସ୍ତୀ ପ୍ରହାରନ୍ତି
ଜାନୁକୁ ଜାନୁ ପାଦକୁ ପାଦ ଛନ୍ଦ   ପଡ଼ି ଉଠି ପୁଣି ଗର୍ଜନ୍ତି
ନାସିକା, ପବନ କି ଅବା ବତାସ
ଅଙ୍ଗକୁ ଅଙ୍ଗ ଠେସାଠେସି ହୁଅନ୍ତେ ବାହାର ହୁଅଇ ହୁତାଶ । ୩ ।
ଯେତେ ସାଧନ କଂସକୁ କହୁଥିଲେ   ସେ ଚାହିଁ ହୋଇଲା ଅନ୍ତର
କୁଳବତୀ ଯେହ୍ନେ ବିଭ୍ରଳିତ ହୋଇ   କେ କଲେ ମୋହନୀ ମନ୍ତ୍ର
ଗୋବିନ୍ଦ, ଅଙ୍ଗ ଲାଗି ହେଲା ତେସନ
ମଦନକୁଳକୁ ନୟନେ ଦେଖିଲେ ମୃତ୍ତିକା-ମାର୍ଜାର ଯେସନ । ୪ ।
ବଜ୍ର ରଥ ଘାତ ପାଇଲେ ଯେମନ୍ତ   ନିସତ ହୁଅଇ କୁଣ୍ଡଳୀ
ମତ୍ତ ଦ୍ୱିପିନ ସମ୍ମୁଖେ ପଡ଼ିଗଲେ   ଯେହ୍ନେ କାତର ହୋଏ ଛେଳି
ମାତଙ୍ଗ, ସଙ୍ଗରେ କିବା ଯୁଝେ ଖର
ବନପତି ସଙ୍ଗେ ସ୍ଥିର ଶଶା ସମ   ମୁଷ୍ଟିକ ମାର୍ଜାର ସଙ୍ଗର । ୫ ।

ବକ ଶାମଳ କାହ୍ନି ସମ ହୋଇବେ      ସମୁଦ୍ର ସଙ୍ଗେ କ୍ଷୁଦ୍ର ନଦୀ
ଶ୍ୟେନ ସଙ୍ଗରେ ଆନ ଖଗ ତୁଲ କି      ନରେଶ ସଙ୍ଗେ କମ୍ଭେଦୀ
ତେମନ୍ତ, କୃଷ୍ଣ ସଙ୍ଗେ ଦୁଷ୍ଟ ଅସୁର
ବେଳକୁ ବେଳ ବଳ କ୍ଷୀନ ହୋଇଲା      ନ ସତ ହୋଇବ ଉତ୍ତର । ୬ ।
ଦେଖି ପୁର-ନର-ନାରୀ ବସୁରନ୍ତି      କଂସଠାରୁ ନାହିଁ ଦାରୁଣ
କେଉଁ ସୁଖ ଶିରୀ ଅର୍ଜିବ ଏ ନନ୍ଦ-      ନନ୍ଦନ ଦୁହିଙ୍କି ମାରଣ
ଦଇବ ! ଧର୍ମ ଯେବେ ସତ ହୋଇବ
ରାମ ଗୋବିନ୍ଦଙ୍କୁ ସଙ୍କଟୁ ରଖିବ      କଂସକୁ ସଂଯୋଗେ ଦହିବ । ୭ ।
ମଞ୍ଚାରେ ଅନାଇ ଜନକ ଜନନୀ      ହୃଦରେ କରନ୍ତି ବସୂର
କରିବୁଁ ନାନା ଦାନ ଦେବ ଅର୍ଚ୍ଚନା      ଏଥର ବଞ୍ଚିଲେ କୁମର
ବ୍ରାହ୍ମଣ, ମୁଖେ ଦେବୁଁ ମିଷ୍ଟ ଭୋଜନ
ଏତେ ଭାଳ ନେନ୍ଦୁଁ ଲୋତକ ବରଷେ      ମଞ୍ଚାକୁ ଲମ୍ବାଇ ଆନନ । ୮ ।
ତାତ ମାତ ନର ନାରୀଙ୍କ ବଜନ      ଜାଣିଲେ ଜଗତଜୀବନ
ମତ୍ତ ମାଲଷିରେ ମୁଥେ ପ୍ରହାରିଲେ      ଗିରିପରେ ବଜ୍ର ଯେସନ
ଶବଦ, ଶୁଣି ରଙ୍ଗସଭା ଚମକ
ବୀରମାନଙ୍କର ମନେ ପ୍ରତେ ହେଲା      ଯମରାଜା ଶବେ କଲା କି ? ୯ ।
ଗୋବିନ୍ଦପ୍ରହାର ବାଜ ଝର ଝର      ଶ୍ରୋଣି ବହେ ଫାଟି ମୁର୍ଦ୍ଧନ
କ୍ଷନ ହାରି ମହୀଉପରେ ଶୋଇଲା      ଆନନ୍ଦ ହେଉଛ ଅବନୀ
କ୍ଷଣକେ, ପୁଣି ଚେତା ପାଇ ଉଠିଲା
ଗୋପୀନାଥ ଶିରେ ବଜ୍ରସମ କରି      ମୁଷ୍ଟି ଏ ନେଇଁ ପ୍ରହାରିଲା ।୧୦।
ମତ୍ତହସ୍ତୀକ ଶୁଣ୍ଡମଣ୍ଡା ପ୍ରହା—      ରିଲେ ସେ ଦୁଅଇ ଯେମନ୍ତ
ସେହିରୂପେ କୃଷ୍ଣ ଅଙ୍ଗକୁ ଲାଗିଲା      ଦୁଷ୍ଟ ରାକ୍ଷସ ମୁଥଘାତ
ସେ ଘାତ, ସହି ଦକ୍ଷ କର ଧଇଲେ
ଚକଗଡ ଦୃଢ଼ ବୁଲାଇ କର୍ଘାତ      କରି ଭୂମିରେ କଚାଡ଼ିଲେ ।୧୧।

ଛାଡ଼ନ୍ତି ଜୀବନ ହୋଇଗଲେ ଲୀନ    ଗୋବିନ୍ଦ ଶ୍ରୀଅଙ୍ଗଦେଶରେ
କାମନା ଦହନ୍ତି ଶାନ୍ତି ବହନ୍ତି    ପାତକ ଖଣ୍ଡିନ୍ତି ସତ୍ତ୍ୱରେ
ପାମର, ମରନ୍ତା ନାହିଁ କି କାଳରେ
ଶିଶୁ ଭାବରେ ଶ୍ରୀକୃଷ୍ଣଚନ୍ଦ୍ରରେ ମଗ୍ନ,    ରହନ୍ତି ଅପୂର୍ବ ଧାମରେ ।୧୨।

*    *    *    *

## ସ୍ୱୟମ୍ବର ସଭା

୬ ଅଭିମନ୍ୟୁ ସାମନ୍ତସିଂହାର
(ରାଗ—କଳକଣ୍ଠା)

କବି ୧୭୫୭ ଖ୍ରୀଷ୍ଟାବ୍ଦରେ କଟକ ଜିଲ୍ଲାର ବାଲିଆ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । କବିଙ୍କର ପ୍ରତିଭା ଅତି ଶୈଶବରୁ ବିକଶିତ ହୋଇଥିଲା । "ବିଦଗ୍ଧଚିନ୍ତାମଣି" ତାଙ୍କ ପ୍ରତିଭାର ଚରମ ପରିଣତି । ଭକ୍ତିର ଅର୍ଥବୈଚିତ୍ର୍ୟ ଓ ଉପେନ୍ଦ୍ରଙ୍କର ଶବ୍ଦଲାଳିତ୍ୟର ଏକତ୍ର ସମାବେଶ "ବିଦଗ୍ଧଚିନ୍ତାମଣି"ରେ ପରିଦୃଷ୍ଟ ହୁଏ । ଶବ୍ଦବିନ୍ୟାସରେ ତାଙ୍କର ନିପୁଣତା ଯେପରି ଭାବ ଅଭିବ୍ୟକ୍ତିରେ ତାଙ୍କର ସ୍ୱାଭାବିକତା ତତୋଽଧିକ ହୃଦୟସ୍ପର୍ଶୀ । କଳାମାଣିକର ସ୍ୱାଭାବିକତାରେ ଯେ କୌଣସି ଜନନୀ ହୃଦୟ ଦ୍ରବୀଭୂତ ହୋଇଯିବ । ବିଦଗ୍ଧଚିନ୍ତାମଣି ଛଡ଼ା କବି ପ୍ରୀତିଚିନ୍ତାମଣି, ସୁଲକ୍ଷଣା, ରସବତୀ, ପ୍ରେମକଳା ଓ ପ୍ରେମତରଙ୍ଗିଣୀ ରଚନା କରିଥିଲେ ।

ଅଳୀସମୂହରେ ମଧ୍ୟରେ ବାଳକା                    ସଭାରେ ଜଗ୍ମ ଲାଳି କର

କହୁଅଛୁ ବେକ ବକ୍ଷ ସହଚରୀ

ଯେନ ହେମଅଙ୍ଗୀ ହେମପଦ୍ମମାଳା      ବର ବର ମନ ସର ରେ ସୁନ୍ଦରୀ ।

ଦେଖ ଭେଟେ ନୃପ ବଳେ ସଭାନ୍ତର

ତବ ତାତ ବଇଲେ ସ୍ୱୟମ୍ବରେ

ଏମାନଙ୍କ ଭାବ ସହିଲେ ଜନକ ତୋ ସ୍ନେହ ଯେନ ମନରେ ଗୋ ସୁନ୍ଦରୀ ।

କହି ସଖୀ ବୋଲେ ଦେଖ ଏ ବଦେହ          ସମାନ ବଦେହରାଜନ

ଧୁର୍ଯ୍ୟଟିକୁଳେ ଏହାଙ୍କ ଜତପନ

ଶଣିବତ ଖାଉଁ ପରବତ        ପରବତକରେ ମନେ ଯେନ ରେ ସୁନ୍ଦରୀ ।

ଦେଖ ଦେଖ ରେ ଗୁରୁ ମରୁଦେଶ

ହଇହୟ ବଂଶରେ ଏ ପ୍ରକାଶ

ପୁରନ୍ଦର ପଦ ସମ୍ପଦ ଲଭିବୁ     ଏହାଙ୍କୁ ମାନସେ ରଖ ରେ ସୁନ୍ଦରୀ ।

ଗୃହାଁ ଶଶିହାସି । କନାଜଜରାଜ          ଦ୍ୱିଜ କୁଳରେ ପରକାଶ

ଧନପତି ବଳ ଧନ ବଶେଷ

ଅନା ମୀନନେହି । ଏ ମତ୍ସ୍ୟ ନୃପତି ଏ ଦେଶେ ବହୁ ଗୋରସ ରେ ସୁନ୍ଦରୀ ।

ଏହି ଦ୍ରାବଡ଼ ଦେଶର ରାଜନ

ମୃଗମଦ ତହିଁରେ ଜତପନ

ଗଙ୍ଗବଂଶ ଜାତ ଦେଶେ ଦେଶେ ଖାଉଁ କରନ୍ତି ବନ୍ଦୀ ବନ୍ଦନ ରେ ସୁନ୍ଦରୀ ।

ଦେଖ ସୁକୃନ୍ତଳା ଶୈଳ ଭୂପ ଏ ଯେ        କର୍ପୂର ଏହା ରାଜ୍ୟେ ଜାତ

ପରାକ୍ରମରେ ମରୁତ ସାକ୍ଷାତ

କୋଶଳରାଜ ଏ ଦେଖ ରେ କୌଶଳା ପନ୍ଥି ଜାତ ଚନ୍ଦ୍ରକାନ୍ତ ରେ ସୁନ୍ଦରୀ ।

ଇଚ୍ଛା ହୋଇଲେ ଏହ ରାଜସୁତ

କଣ୍ଠେ ବରମାଳା ଦେଲ ତୁରିତ

କାନ୍ତ ରୂପେ ମୋହ ହୋଇ ଚନ୍ଦ୍ରମୁହିଁ ।   କର ଏମନ୍ତେ ସୁକାନ୍ତ ରେ ସୁନ୍ଦରୀ ।

ଦେଖ ଏ ସିନ୍ଧୁଦେଶ ରାଜା ସିନ୍ଧୁକ    ଅଶ୍ୱପତି ଏହ୍ନୁ ବୋଲଇ

ରତ୍ନାକରଅଂଶୀ ଏହ୍ନୁ ଅଟଇ

ଦେଖ ମଳୟାଚଳ ରାଜା ଅଗୁରୁ    ଚନ୍ଦନ ଯହିଁ ହୁଅଇ ରେ ସୁନ୍ଦର ।

ଗୃହ୍ନାଁ କୁନ୍ତଳ ଦେଶ ପତିଙ୍କ

କ୍ଷମଂ ପାଳନେ ଯେ ସପ୍ତ କ୍ଷିତିଙ୍କ

ଇଚ୍ଛା ହେଲେ ମାଳା ଗଳେ ଦେଇକରି  ବର ଏ ସୋମବଂଶୀଙ୍କ ରେ ସୁନ୍ଦରି ।

ଦେଖ ଏ ବଙ୍ଗଦେଶ ରାଜ୍ୟେ ଗଙ୍ଗାଟି    ଏହାଙ୍କ ରାଜ୍ୟରେ ବହଇ

ଏହା ପୁଣ୍ୟ ଧନ୍ୟ ଲୋକେ ଅଟଇ

ଦେଖ ଏ ଗଉଡ଼େଶ୍ୱରଙ୍କୁ ମିଳଣି । ମହିମା କୁହା ନ ଯାଇ ରେ ସୁନ୍ଦରି ।

ମାହେଶ୍ୱର ନେପାଳ ପାଳକ ଏ

ହେମ ଅଦ ଏ ଧାତୁ ଉପୁଜାଏ

ଦେଖ ରେ ସୁନ୍ଦରି ଏ କେରଳ ରାଜ୍ୟ ସ୍ୱରବାଳା' ଯହିଁ ଫେହାଏ ରେ ସୁନ୍ଦରି ।

ମାଳବେଶ ଯୁବରାଜଙ୍କୁ ସେ ପୁଣି    ଚନ୍ଦ୍ରାଇଦଏ ଠାରି କରି

ଦେଖ ଦେଖ ସୁମୁଖି । ଏ ସୁନ୍ଦର

କୁମାରଙ୍କୁ ଅନଙ୍ଗ ବଡ଼ ନ ଲଭିବା    କାମମୋହନ ଶରୀର ରେ ସୁନ୍ଦରି ।

ସର୍ବ ଗୁଣ ପଣେ ଯେ ବିଚକ୍ଷଣ

ବୁଦ୍ଧି ସମାନେ ଗଣେଶଙ୍କୁ ଯେନ

ଅନେକ ଜନ୍ମରେ ପୁଣ୍ୟ କରିଥିଲେ  କର' ଏହାଙ୍କୁ ବରଣ ରେ ସୁନ୍ଦରି ।

ଶୁଣି ଏଣୀପଣୀ ଏ ବାଣୀ ତକ୍ଷଣେ    ଈକ୍ଷଣକୋଣ କଲା ଦଉ

ଶୋଭି ଦେଖି ଲୋଭିତ କଲା ଚିତ୍ତ

ଏ ମୋ ପତି ହେବେ ବିଚାରି ସୁମତି ଲାଜେ ମଥା କଲା ନତ ସେ ସୁନ୍ଦରୀ

ସଖୀ ଜାଣି ବୋଇଲା ରେ ମହିଳା ।

ବର ବାଞ୍ଛିତ ତୋର ଜଣାଗଲା

ଜୟମାଳା ଗଳେ ଲମ୍ବାଅ ସୁଶୀଳା । ହେଳା କାହିଁପାଇଁ ହେଲା ରେ ସୁନ୍ଦରି ।

*    *    *    *

# ଯଶୋଦା ବିଳାପ

( ରାଗ—କଯୃନ୍ତକଳା, ବାଇଁଚ ଝାମ୍ପି

ଧୀରେ ଯେନ କାନନରେ କୃଷ୍ଣ ବଳମ୍ବିତା
ବାତ୍ସଲ୍ୟ ମମତା ଯେନ ଭକ୍ତିଛନ୍ତି ମାତା—କଳାମାଣିକ ରେ ।

ନିଧନ ସଙ୍ଖାଳି ମୋର ଦରିଦ୍ରପସର
ଅନ୍ଧର ଲଉଡ଼ି ବାବୁ ହୃଦରତ୍ନହାର—କଳାମାଣିକ ରେ ।

ମୋ ଜୀବଜୀବନ ତୁହି ନୟନପ୍ରତିମା
ତୋତେ କି ପାଶୋରି ହେବ ମୋର ସୁଖସୀମା—କଳାମାଣିକ ରେ

ଡରୁଥାଇ ଅନ୍ଧାରକୁ ରଖିପାଇ ଗୋରୁ
ଜନକ ଜନନୀ ମୁଖ ଚାହିଁପାଇଁ ଆରୁ—କଳାମାଣିକ ରେ ।

ବୃଦ୍ଧକାଳେ ତୁ ମୋହର ଏକଇ ନନ୍ଦନ
ହୃଦ-ତାପ-ବିନାଶନେ ତୁ ହରିଚନ୍ଦନ—କଳାମାଣିକ ରେ ।

ଗୋଷ୍ଠିକା ଅଧାମ ସର ନ ରୁଚଇ ତୋତେ
ନାଚ ଲଷ୍ଟ ମାଗୁଥାଉ ଲବଣୀ କେମନ୍ତେ—କଳାମାଣିକ ରେ ।

ତୋତେ ମୁଁ ଧଇଁଲେ ଗୋଳି ହୋଇଗଲୁ ତୁହ
ତୋ ଦୁର୍ବଳ ଦେଖି କାହୁଁ ପଶିବଇ ମୁହିଁ—କଳାମାଣିକ ରେ ।

ଡାକିନୀ ଛେଉନ୍ତ ବୋଲି ଡରୁଥାଇଁ ମନେ
ବାର ବାର ବାରୁଥାଇ ଯିବା ପାଇଁ ବନେ—କଳାମାଣିକ ରେ ।

ନିଶାନ୍ତର ମାଢବାର ଶୁଭୁଛି ଶୃଙ୍ଗକ
ମୁଁ ଡାକୁଣୀ ଛଡ଼ଦେଲି ବନକୁ ଚାହିଁକି—କଳାମାଣିକ ରେ ।

ଝାଳ ବହୁଥିବ ଅଙ୍ଗୁ ଲାଗି ଝାଞ୍ଜିଶର
ଶ୍ରମ ପାଇ ତରୁତଳେ ବସୁଥିବୁ ସର—କଳାମାଣିକ ରେ ।
ନେଲୁ ନାହିଁ କାହିପାଇଁ ତୋ କଠାଉ ଛତା
ଦଳେ କଣ୍ଟା ଲାଗି ହୋଏ ମୃଦୁ ପାଦ ଚନ୍ଦ୍ରା—କଳାମାଣିକରେ ।
କାନ ଡେରିଥାଇ ଏକା ତୋ ବେଣୁଗୀତକୁ
ଆଜ କପାଁ ଶୁଭୁ ନାହିଁ ଭିଜୁଛ ମନକୁ—କଳାମାଣିକ ରେ ।
ତୋଠାରୁ ଅଧିକ ବାଇ ତୋର ବଡ଼ଭାଇ
ବୋଧ କରି ଗଲା ନାହିଁ କାହିଁକ ରଖାଇ—କଳାମାଣିକ ରେ ।
ତୋ ମାଧୁରୀ ସୁରୂପରୀ ଦେଖି ସ୍ୱଖୀ ଅଖି
ଅନ୍ଧ କରି ଗଲୁ ବଳା କ ମମତା ରଖି—କଳାମାଣିକ ରେ ।
ଛଇଳ ଅନାଇ ଛଇ ଫୁଲରି ହିଡ଼ଙ୍ଗେ
ମୁରଲୀ ବଜାଉଥାଉ କ ଗୃତୁରୀ ରଙ୍ଗେ—କଳାମାଣିକ ରେ ।
କୋଳପାଇଁ ଅଳ କରି ଗଡୁ ଭୂ ଧୂଳରେ
ବେଶ ହୋଇଥାଉ ରସି କୁସୁମମାଳରେ—କଳାମାଣିକ ରେ ।
ନଟବର ଛରପାଟୀ ବେଶ ମନୋହର
ରଙ୍ଗିମା ଅଧରେ ହାସ କ ଭାଉ ସୁନ୍ଦର—କଳାମାଣିକ ରେ ।
ନୟନ ହୃନ୍ଦର ମାନେ ଭ୍ରୂଲତା ନାଟକୁ
ଅଳକା ଆବୃତ ଶୋଭା ଲଲାଟପଟକୁ—କଳାମାଣିକ ରେ ।
ନାକେ କାବ୍ୟତାର ମୋତି ବସୁଣୀ କ ଶୋଭା
ମୋ ଅଖି ଦେଖିବା ପାଇଁ ନିରବଧି ଲୋଭା—କଳାମାଣିକ ରେ ।
ମକରକୁଣ୍ଡଳଯୁଗ ଅନ୍ଦୋଳେ ଗଣ୍ଡରେ
ଦେଖି ଅନନ୍ଦରେ ଭାଷା ନ ଆସେ ତୁଣ୍ଡରେ—କଳାମାଣିକ ରେ ।
ଗୁଞ୍ଜବେଢ଼ା ବାଙ୍କ ଚୂଡ଼ା ଖୋସା କାମୁଡାଳ
କ ସୁନ୍ଦର ଦଶୁଥାଉ ଅପୂ ତଳ ତଳ—କଳାମାଣିକ ରେ ।

କେତେ ସ୍ୱଚ୍ଛ କେକପୁଚ୍ଛ ସୁଗୁଞ୍ଜସ୍ୱ ପାଟି
ଅସିବ କାହ୍ନା ପାଟିକି ତେତେ ପଡ଼ିପାଟି—କଳାମାଣିକ ରେ !
କସ୍ତୁରୀ ତିଳକ ନାସେ ଭାଲେ ଗୋରଚନା
ଭାଲରେ ଚନ୍ଦନପାଟି ମନ ବଶ ସିନା—କଳାମାଣିକ ରେ !
ରଙ୍ଗ ମାଟି କି ରଙ୍ଗରେ ହୃଦରେ ଚିତ୍ରିତ
କଉସ୍ତୁଭ ବନମାଳ ସୁଷମା ବଚନ୍ଦ—କଳାମାଣିକ ରେ !
କାଉଁଶ କଙ୍କଣ କରେ କଟିରେ କିଙ୍କିଣୀ
ନୂପୁରଶବଦ ମୋର ମନ ନିଏ କିଣି—କଳାମାଣିକ ରେ !
ସୁନ୍ଦର ହୃଦର ଭଙ୍ଗୀ ନ ଦେଖି ତୋହର
ବାଇବୁଦ୍ଧି ହୋଇଲାନି ଅଁସି ତ ମୋହର—କଳାମାଣିକ ରେ !
କଣ୍ଠ କରିଥିଲୁ ପରା କାହିଁକି ନଇଲୁ
କାହ୍ନା ସଙ୍ଗତରେ ଅବା ପୁଣି କଳ କଲୁ—କଳାମାଣିକ ରେ !
କି ଦୂର ବନକୁ ଗଲୁ ତଥ୍ୟ ନ ଜାଣିଲି
ମୁଁ ପାପିଷ୍ଠା କାହିଁପାଇଁ ତୋ ସଙ୍ଗେ ନ ଗଲି—କଳାମାଣିକ ରେ !
ରବିକର ଗୃହୁଁ ଅଛି ଯତମୃଗୀ ପରି
ଦିନ ସରୁ ନାହିଁ ଲବ ହେଲା ଯୁଗ ସରି—କଳାମାଣିକ ରେ !
କେ ଯାଇ କହନ୍ତା ତୋତେ ମୋହର ବେଦନା
ଅଜଣ୍ୟ ହୁଅନ୍ତୁ ଦୁହ ମାତା ସ୍ନେହ ଧେନା—କଳାମାଣିକ ରେ !
ଦଉଡ଼ ଯିବୁ କି ବନେ ହେଉଛି ଅତୁର
ପୟୋଧରୁ କ୍ଷୀର ସ୍ରବ ପଡ଼େ ଧାର ଧାର—କଳାମାଣିକ ରେ !
ମନ ଛନାଛନ ବନ ନେତ୍ରୁ ନ ରହିଲା
ତୋ ଅଇଲା ପରା ଛାଇ ମୋତେ ପ୍ରତେ ହେଲା—କଳାମାଣିକ ରେ
ଖିତମାଳେ ସୁତମାଳେ ରହିଲା ନୟନ
କୁପୁଙ୍କ କ୍ଷପାରେ ମୋର ବନ୍ଦୀ ହେଲା ମନ—କଳାମାଣିକ ରେ !

ଅନେକ ଅପଦ୍ଦୁଁ ତୋତେ ରଖିଲେ ଅମ୍ବିକା
ନାମ ଦେଇଅଛୁ କାନ୍ତୁ କନ୍ଥା କଣା ବକା—କଳାମାଣିକ ରେ !
ଅପଛଅଣିଆ ବୋଲି ଝିନ୍ଧ ନାକ କାନ
ଖଞ୍ଜିଲି ବସୁର୍ଣ୍ଣା ବାଳ ଲୋକନେ ଶୋଭନ—କଳାମାଣିକ ରେ !
ମନ୍ଦ ଦୃଷ୍ଟି ନ ବାଧିବ ବଗୁର ମୋହର
କଳାବିନ୍ଦୁ ଦେଇ ଥାଇ କପାଳରେ ତୋର—କଳାମାଣିକ ରେ !
ଗୋଭଙ୍କ ଲେପଇ ଅଙ୍ଗେ ଅପଦହରଣେ
ପଦରେଙ୍କ ଦେଉଥାନ୍ତି ବୃଦ୍ଧ ଗୋପୀମାନେ—କଳାମାଣିକ ରେ !
ରଙ୍ଗ କାଛ ନ ଦଅଇ ଡାକଣୀଙ୍କି ଡର
ତୁଚ୍ଛ ବେଶ କରଥାଇ ଲୋଭିବୁ ନ ପାର—କଳାମାଣିକ ରେ !
କୋଳେ ଶୋଇଥାଉ କଦା ଝୁଙ୍ଗିଗଲେ ତୋର
ଚମକି ମୋ ଗଳା ଛନ୍ଦ ତାକୁ ମାଁଡା ଗିର—କଳାମାଣିକ ରେ !
ଏମନ୍ତ ନନ୍ଦନ ପୁଣି ବନବାସୀ ହେବ
ଜନମ ଜୀବନ ଧରି କପରି ରହିବ—କଳାମାଣିକ ରେ !
କାହାକୁ କି ସୁତ ଦେଇ ନାହିଁ ରେ ଦଇବ
ତୋ ପରି ଅବୁଝା ପୁଣି କେ କାହିଁକି ହେବ—କଳାମାଣିକ ରେ
ବିଭ୍ରମରେ ସନ୍ଧି କଷ୍ଟ ଦୂର ନ ଜାଣିଲେ
ଅସ ବାପ ଭାଇ ଧନ ଛଳକି ବୋଇଲେ—କଳାମାଣିକ ରେ !
ଅଯତନେ ନୟନ ଦେଲେ ଦଉଡ଼ ଦାଣ୍ଡକୁ
ହୃଦେ କର ମାରି ଯତ୍ନ ନ କଲେ ପିଣ୍ଡକୁ—କଳାମାଣିକ ରେ !
ରୋହଣୀ ବାଣଲେ ଅସି କହୁ ହ୍ରୋଧ କରି
ଧୀରେ ଘେନ ଏ ବାସ୍ତୁଙ୍କ ବଚନମାଧୁରୀ—କଳାମାଣିକ ରେ !
ସାମନ୍ତସିଂହାର ଦୀନ କରଛୁ କାମନା
କୃଷ୍ଣପ୍ରେମରସ ବିନା ନୋହିବ ଭାବନା—କଳାମାଣିକ ରେ !

# ମାୟାମୃଗ ବଧ

## ୰ ବିଶ୍ୱନାଥ ଖୁଣ୍ଟିଆ

### (ରାଗ—ମୁଖାରି ପଞ୍ଚତାଳ)

କବି ଅଷ୍ଟାଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିବା ଅନୁମାନ କରାଯାଏ । ପୁରୀରେ ଜଗନ୍ନାଥ ଦେବଙ୍କ ସେବକମାନଙ୍କ ମଧ୍ୟରେ "ଖୁଣ୍ଟିଆ" ଉପାଧି ପ୍ରଚଳିତ ଥିବାରୁ କବି ପୁରୀବାସୀ ଥିଲେ ବୋଲି କୁହାଯାଇପାରେ । କବିଙ୍କ ରଚିତ "ବିଚିତ୍ର ରାମାୟଣ" ଉତ୍କଳରେ ସୁପରିଚିତ । ସୁମଧୁର ଭାଷା ଓ ମନୋହର ରାଗ ରାଗିଣୀ ଏହି ଗ୍ରନ୍ଥକୁ ଉତ୍କଳରେ ଏତେ ଲୋକପ୍ରିୟ କରିଅଛି ।

ହେମ ହରିଣୀ । ଧୀରେ ଧାମନ୍ତେ ସୁନ୍ଦର ଧରଣୀ
ଧରୁ ଧରୁ କରୁ ମୃଗ ପଳାଉଛି ଗୋଡ଼ାଉଛନ୍ତି ରଘୁମଣି ।

କେତେବେଳେ ମୃଗ ଦୃଷ୍ଟିକି ନ ଦିଶେ କେତେବେଳେ ଦୃଷ୍ଟିଗୋଚର
କେତେବେଳେ ଦୂରେ କେତେବେଳେ ପାଶେ ରାମଙ୍କୁ ହେଲା ଅଗୋଚର
ରାମଙ୍କୁ ବହୁତ ଦୂର ନେଇ ଯାଇ ଗଲା ଅଦୃଶ୍ୟ ହୋଇ କାହିଁ
ଫୁଟିଣ ରାମ ତରୁତଳେ ବସନ୍ତେ ପୁଣି ଛମୁରେ ହେଲା ଯାଇ ।
ମାରିବି ବୋଲି ମନରେ ବିଚାରିଣ କୋଦଣ୍ଡରେ କାଣ୍ଡ ସନ୍ଧିଲେ
ବଜ୍ରାଘାତ ପ୍ରାୟ ଶବଦ ଶୁଭିଲା ଯେତେବେଳେ ଶର ବିନ୍ଧିଲେ
'ଲକ୍ଷ୍ମଣ ହାହା' 'ସୀତା ହାହା' ବୋଲିଣ ରାମସ୍ୱରେ ଉଚ୍ଚେ ଡାକିଲା
ମୃଗ ଦେହ ଛାଡ଼ି ନିଜ ତନୁ ଧରି ପ୍ରାଣ ହାରି ତଳେ ପଡ଼ିଲା ।

ଦେଖି ରାମଚନ୍ଦ୍ର ଚକିତ ହୋଇଣ ବୋଲନ୍ତି ହେଲା ପରମାଦ
ମୃଗ ଦେହ ଛାଡ଼ି ଅସୁର ଦେହରେ କପଟ କୁଣ୍ଡଳ ଅଙ୍ଗଦ ।
ଏ ବାଣୀ ଶୁଣି ଅମ୍ବର ପ୍ରାପ୍ତ ମଣି ଅସଇ ନ ସୁଣ ଲକ୍ଷ୍ମଣ
ଛାଡ଼ି ଅଛିଲେ ସୀତାଙ୍କୁ ନ ପାଇବ କି ବୋଇଲା ଦୁଷ୍ଟ ଦାରୁଣ ।
ଏହା ବସ୍ତୁରନ୍ତେ ବାମ ଭୂଜ ବାମ ନୟନ ତାଙ୍କର ସ୍ଫୁରିଲା
ବୋଲେ ବଣି ରାମ ପଛରେ ଗୋଡ଼ାଇ ଶୃଗାଳ ଘୋର ଧ୍ୱନି କଲା

## ସୀତା ହନୂମାନ ସମ୍ବାଦ

୰ କଣ୍ଠନାଥ ଖୁଣ୍ଟିଆ

(ରାଗ—ଅହାରୀ, ଅଦ୍ୟମଗୁଣୀର ବାଣୀ)

କହ ହନୂ ମୋର କାନ୍ତର କୁଶଳ ଲକ୍ଷ୍ମଣର ସର୍ବ କୁଶଳ
ମରକତ ହେମ କେନ୍ନ କଳେବର ହୋଇ କାହାନ୍ତି ନା ଦୁର୍ବଳ
ହନୂ ହେ, କେନ ଭାଇଙ୍କର କୁଶଳ
କୁଶଳ କରି ଲକ୍ଷ୍ମଣ ସେବା କରି ଥାନ୍ତିକି ପାଦକମଳ ?
ମୋର ବିଚ୍ଛେଦ ହୋଇଲା ଧନ୍ତୁ ତନ୍ତୁ ଦୁର୍ବଳ ହୋଇଥିବ ପରା
ଅଧୈର୍ଯ୍ୟ ହୋଇଲେ ଲକ୍ଷ୍ମଣ ତାହାଙ୍କୁ କରାଉଥାନ୍ତିକି ଧୀର
ହନୂ ହେ, ମୋତେ ଏଥୁଁ ନଷ୍ଟେ ନେବେ କି ·
ବାନର ବଳ ଘେନି ସିନ୍ଧୁ ପାରିକି ହୋଇ ଏଥକୁ ଅସିବେ କି ?

ବୋଲଇ ଯେ ହନୁ କନ୍ଧରେ ବସାଇ ଶ୍ରୀରାମ ପାଶେ ଘେନିଯିବି
ସ୍ୱଇଚ୍ଛାରେ ମୁହିଁ କେମନ୍ତ ପ୍ରକାରେ ପୁରୁଷ ଅଙ୍ଗକୁ ଛୁଇଁବି
ହନୁ ହେ, ଦୈତ୍ୟରାଇ ରାବଣ ଆଣିଲା
ତୁମ୍ଭେ ଦୈତ୍ୟରାଇ ଘେନିଗଲେ ପ୍ରଭୁଙ୍କ ପଣ ଆଉ କାହିଁ ରହିଲା ?
ବଣ୍ଡବାନନ୍ଦନ ଅର୍ପିଣ ଏଠାକୁ କଣ୍ଠ ଯେ ବେନି ମାସ କଲା
ବେନି ମାସେ ମୋତେ ଶ୍ରୀରାମ ଲକ୍ଷ୍ମଣ ଦେଖାଇବୁ ବୋଲି ବୋଇଲା
ହନୁ ହେ, ଏକ ମାସ ଥିବ ପ୍ରାଣ ହେ
ପ୍ରାଣ ଥାଉଁ ଥାଉଁ ଶ୍ରୀରାମ ଲକ୍ଷ୍ମଣ ଶୀଘ୍ର କରି ତୁମ୍ଭେ ଆଣ ହେ ।
କହିଁ ହନୁ ମୋର ପାଇଁ ରାମ ଦେଲେ କରପଲ୍ଲବରୁ ମୁଦ୍ରିକା
ଶୂନ୍ୟ ଯେ ଦିଶୁଥିବ ମୋ ପ୍ରଭୁଙ୍କର କରକମଳ ଅନାମିକା
ହନୁ ହେ, ଏ ମୁଦ୍ରିକା ନୋହେ ଅନ୍ତର
ପ୍ରଭୁଙ୍କ କରେ ଥାଇଣ ମୋର ତନୁ ଭ୍ରମୁ ଯେ ଥାଇ ନିରନ୍ତର ।
ମୁଦ୍ରିକା ମସ୍ତକେ ଲଗାଇ ଅପଣା ପଣନ୍ତରେ ବାନ୍ଧି ରଖିଲେ
ମସ୍ତକୁଁ ମଣି ବାହାର କରି ପୁଣି ହନୁକରରେ ସମର୍ପିଲେ
ହନୁ ହେ, ମୋଠାରେ କରୁଣା କରିବେ
ଦୀନ ଜନଠାରେ କରୁଣା କଲେଟି କରୁଣାସିନ୍ଧୁ ବୋଲାଇବେ ।
କହିବ ହନୁ ହେ ଏତେକ ମାନକ ମୋହର ବିନୟ ଉଦନ୍ତ
କେବଳ ମୋହର କଲ୍ୟ ଅପରାଧ କ୍ଷମା କରିବେ ମୋର କାନ୍ତ
ହନୁ ଯେ, ପ୍ରବୋଧ କରିଣ କହଇ
ବୋଲେ ଋଷି ରାମ ଛାମୁରେ ଜଣାଇ ନିକଟେ ଆଣିବି ବୋଲଇ ।

# ସୀତାବିଳାପ

## ୬ ବିଶ୍ୱନାଥ ଖୁଣ୍ଟିଆ

(ରାଗ—ଚିନ୍ତାଭୈରବ)

ଅହା ଧନୁର୍ଦ୍ଧର ବୀରବର    ଧନୁଶର ନ ଥିଲା କି କର
ଯାହାର ବାଣ ବ୍ରହ୍ମାଣ୍ଡ ଦହିପାରେ
ତାଙ୍କୁ ମାରିଲା ପ୍ରଶସ୍ତ ଛାର ହେ ଦଇବ । ୧ ।

ଅଣୁ ନ ଥିଲେ ମୋତେ ମୋ ପତି    ଜାଣନ୍ତି ସେ ପଣ୍ଡିତ ବିପତ୍ତି
ମୁହିଁ ନ ପାରି ମୁଁ ସଙ୍ଗତେ ଅଇଲି
ତେଣୁ ହୋଇଲି ଏମନ୍ତ ଗତି ହେ ଦଇବ । ୨ ।

ଚିରଂଜୀବୀ ଅଟନ୍ତି ଶ୍ରୀରାମ    ମୁନିବଚନ ହେଲା କି ଭ୍ରମ
ମୋତେ ବୋଲନ୍ତି ବିଧବା ଯୋଗ ନାହିଁ
ଏବେ କିପାଁ ହେଲା ଏତେ କର୍ମ ହେ ଦଇବ । ୩ ।

ଯେଉଁ ଯୁବତୀ ପତି ଅଗରେ    ମରେ ପୁଣ୍ୟବତୀ ବୋଲି ତାରେ
ଯୁବତୀ ଅଗେ ପତି ଯେବେ ମରଇ
ତାକୁ ଦୂଷିତ ହୋଏ ସଂସାରେ ହେ ଦଇବ । ୪ ।

ଯେବେ ଲକ୍ଷ୍ମଣ ଗଲେ ପଳାଇ    ମୋର ଶାଶୁଙ୍କୁ କହିବେ ଯାଇ
ସୀତା ନେଇ ଦୈତ୍ୟ ରାମଙ୍କୁ ମାରିଲେ
ଏହା ଶୁଣିଲେ ଜୀଇବେ ନାହିଁ ହେ ଦଇବ । ୫ ।

ତୁମ୍ଭେ ଜାଣ ତ ସକଳ ରୀତି    କିପାଁ ଜାଗନ୍ତି ନୋହିଲ ରାତି
ମୁହିଁ ତୁମ୍ଭଙ୍କୁ କାଳରାଜି ହୋଇଲି
ମୋର ଯୋଗୁଁ ବିନାଶ ମୋ ପତି ହେ ଦଇବ । ୬ ।

ପୁଣି ଧନୁ ତୂଣୀକ ଅନାଇ ଚଳ୍ପି ବଳପନ୍ତ ଗୁଣ ଗାଇ

ଏହୁ କାଳରେ ପ୍ରଶସ୍ତ ଦ୍ୱାରେ ରହୁ

ତାର ସମ୍ମୁଖୁ କହୁ ପଠାଇ ସେ ପ୍ରଶସ୍ତ । ୭ ।

ଦୂତ ଶ୍ରବଣେ ବେଗେ ଜଣାଇ ଦେବ ପ୍ରଶସ୍ତ ଅସିଛୁ ଧାଇଁ

ଜଣାଇ ପଠିଅଇଛୁ କପିମାନେ

ଗଡ଼ ପାଚେଶ୍ୱ ପଡ଼ଲେ ଡେଇଁ ହେ ଭେ ଦେବ । ୮ ।

ଶୁଣି ସତ୍ୱରେ ତହୁଁ ଅଇଲ୍ଲ ପ୍ରଶସ୍ତକୁ ସବୁ ପଗୃଶ୍ଲ୍ଲ

ଗ୍ରବଣ ଅସିବା ମାନେ ଶର ଧନୁ

ସେହୁକ୍ଷଣି ଅଦୃଶ୍ୟ ହୋଇଲ୍ଲ ହେ ସୁଜନେ । ୯ ।

ଦଶଶିର ବୋଲେ ମାର କପି ଦୈତ୍ୟମାନଙ୍କୁ ପେଷିଲ୍ଲ କୋପି

ବୋଲେ ବଣି ଚଢ଼ପାଶରେ ଜଗିଲେ

ଗ୍ରଜା ଅଜ୍ଞ ପାଇ ଆଠ ବ୍ୟାପି ସେ ଅସୁରେ । ୧୦ ।

## ଜଗତେ କେବଳ

କବିସୂର୍ଯ୍ୟ ୬ ବଳଦେବ ରଥ

( ରାଗ—ଅଷାଢ଼ଶୁକ୍ଳ )

ଏହି କବି ଉନବିଂଶ ଶତାବ୍ଦୀରେ ଗଞ୍ଜାମଜିଲ୍ଲା ଅନ୍ତର୍ଗତ ଆଠଗଡ଼ ରାଜ୍ୟରେ ଜନ୍ମ ଗ୍ରହଣ କରିଥିଲେ । ବଳଦେବ ଉତ୍କଳପ୍ରସିଦ୍ଧ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' କାବ୍ୟ ରଚନା କରି ଆଠଗଡ଼ର ରାଜାଙ୍କ ନାମରେ ଭଣିତ କରିଥିଲେ । ଏହି କାବ୍ୟ ରଚନା କରିବା ପୂର୍ବରୁ ସେ 'କବିସୂର୍ଯ୍ୟ' ଉପାଧି ପାଇଥିଲେ । କୌଣସି କାରଣ, ବଶତଃ ଆଠଗଡ଼ ରାଜାଙ୍କ ସହିତ କବିଙ୍କର ମନୋମାଳିନ୍ୟ ଘଟିବାରୁ ସେ ପରବର୍ତ୍ତୀ ଜୀବନ କଳକ୍ତରର ରାଜାଙ୍କ ଆଶ୍ରୟରେ କଟାଇଥିଲେ । ଏହିଠାରେ ସେ 'ଚନ୍ଦ୍ରକଳା' ନାମକ ବୃହତ୍ କାବ୍ୟ ରଚନା କରିଥିଲେ । ଏତଦ୍-ବ୍ୟତୀତ କବି ରତ୍ନାକର ଚମ୍ପୂ, ମହାବାହୁ ଚଉତିଶା ଓ ଅନେକ କ୍ଷୁଦ୍ର କ୍ଷୁଦ୍ର ସଙ୍ଗୀତ ମଧ୍ୟ ରଚନା କରିଥିଲେ ।

ଜଗତେ କେବଳ

କେନେ ହସିବେ ଏହି ତନ୍ତୁ ଫଳ ।

ଜଟିଳ କରି ସ୍କନ୍ଧ ରୋମରାଜି
ଶିଖରିଦରୀରେ ଥରୁ ଗରଜି
କୁଟିଳ କରି ଭ୍ରୂକୁଟିକି ଗୁହୁଁ
ସରମା କଣ୍ଠୀରବ ହେବ କାହୁଁ । ୧ ।

ଅଲକତଦ୍ରବ ନୟନେ ବୋଳି
ରସାଳ ଗହଳ ଶାଖାରେ ଖେଳି
କବଳ କରୁ ତା କଳକଳାପ
କାକ କି କରିବ ପଞ୍ଚମାଳାପ । ୨ ।

ବରଜୀବରସେ ଦେଇ ମାନସ

ବରଜ ବରଷ୍ଟେ ଅମେଧ ଗ୍ରାସ

ଦେହେ ମନ୍ଦାକିନୀରଜ ଲଗାଇ

ଗ୍ରାମ ଶୂକର କି ହୋଇବ ଗାଈ । ୩ ।

ଚଞ୍ଚୁ ଚରଣେ ଲଗାଇ ହିଙ୍ଗୁଳ

ନିଜ ତୁଣ୍ଡେ ମଣ୍ଡି ଖଣ୍ଡ-ମୃଣାଳ

ଶୁକ୍ଳ ପୂର୍ବ ଅଙ୍ଗ ବୁଲାଇ ବକୀ

ତେବେ ସେ ମରାଳୀ ବୋଲାଇବ କି । ୪ ।

ରଞ୍ଜି ନାସୂକ ରଙ୍ଗେ ଶ୍ବେତଦାର

ଚଞ୍ଚିଲେ ହେଲେ ଶୃଗୁଳ ସବାର

ଖେଲାଇଲେ ହେଲେ ନାନା ମସଲ

ତୁରଙ୍ଗ ହୁଏ କି ବଂଶଉପିଲ୍ଲ । ୫ ।

ବଦରିକା ବନେ ନିତ୍ୟ ନିବାସ

କରି ଆଚରି ବ୍ରତ ଉପବାସ

ପ୍ରପନ୍ନ କଳେନ୍ଦ୍ରେ ନାନା ପ୍ରକାର

ଖଦ୍ୟୋତ ହୋଇବ କି ପ୍ରଭାକର । ୬ ।

ଯାହାକୁ ଯାହା କରିଛି ଦଇବ

ତହୁଁ କିକି ସେ ଅନ୍ୟଥା ହୋଇବ

ସେବିଲେ ହେଲେ ଯତ୍ନେ କୋଟି ପୁଷ୍ଟ

ପିତୃକୃତି କେହୁ ହେବ ପୁରଷ୍ଟ । ୭ ।

ଦେବ ଉପବନେ ହୋଇ ଜନତା

ସ୍ୱବାସ-ମଦରୁ ଉବସଲତା

ତୁଳସୀ ତୁଲେ ହେଲେ ମିଶାମିଶି

ତାହାକୁ ଯେବେ ବୋଲିବା ତୁଳସୀ । ୮ ।

ସମଝଇ ନାହିଁ ସ୍ୱଜାତି ଭାଷା

କହିଲେ ଯେ ହୁଅଇ ଲୋକହସା

ଜଡ଼ ମୁଁ ବୋଲ୍ ନ ଜାଣି ନିର୍ବେଦ

ଷଡ଼ଦର୍ଶୀ ଭୁଲେ କଲେ ବିବାଦ । ୯ ।

ଦେହରେ ବାଜିଲେ ପର ନିଶ୍ୱାସ

ସମ୍ଭାଳିବାକୁ ନ ଥାଇ ବିଶ୍ୱାସ

ନିର୍ଲଜ୍ଜ ଅଭିମାନେ ତେଜି କଚ୍ଛ

ହାତୀ ଲଢ଼ାଇକି ବାନ୍ଧିଲେ କାଛ । ୧୦ ।

କରମରେ ତ ହୋଇଅଛି ଲେଖା

କରମର୍ଦ୍ଦକ ଯୋଗ୍ୟ ତୋର ଶିଖା

ହରମଉଳିଯୋଗ୍ୟ ଚମ୍ପକକୁ

ଭ୍ରମରେ ବୃଥା ପଡ଼ି ଯା ଠାକୁ । ୧୧ ।

ଶୁକ୍ଳଚନ୍ଦ୍ରୋଦୟା ମଶାଲ୍ ପାଖେ

ବନ୍ଧି ଜାଳିବ ଯେବେ ଦଶା ମୁଖେ

ଧାଡ଼ା ତ କରି ନାହିଁ ତାମାକାଶ

କରୁଣେ ହେବ ସେପରି ପ୍ରକାଶ । ୧୨ ।

* * * * *

# ଲୁହା କି ହୋଇବ ସୁନା ?

## କବିସୂର୍ଯ୍ୟ ୬ ବଳଦେବ ରଥ

ବାସି କୁସୁମକୁ ପ୍ରଶଂସିଲେ ହେଲେ
ବାସିବ କି ମନୋହର
ଘାସିଙ୍କୁ ସମ୍ଭରତ କି ଭୁଦେବ
ଆଶୀର୍ବାଦ ଅଡ଼ମ୍ବର
ସରସେ, କୁହାଯାଉଥାଏ ସିନା
ଉହାଇ ଉହାଇ ପୁଟ ଦେଲେ ହେଲେ
ଲୁହା କି ହୋଇବ ସୁନା ? ୧ ।

ପାମର-ପାଣିଗ୍ରାମୂଳୀ କି ହେବ
ତାମରସ ଫୁଲ-ବଲ୍ଲୀ
ଗ୍ରାମ ଶୂକରଙ୍କ ବଡ଼ାଉ ଯେ ଥିଲ
କାମଧେନୁ ହୁଅ ବୋଲି
ସରସେ, କୁହାଯାଉଥାଏ ସିନା
ଉହାଇ ଉହାଇ ପୁଟ ଦେଲେ ହେଲେ
ଲୁହା କି ହୋଇବ ସୁନା ? ୨ ।

କୁଅ ପଞ୍ଜରେ ପଡ଼ିଲେ କି ଧରେ
ଶୁଆ ପରି ହରିନାମ
ଅଣ୍ଟା ଗୁହାରେ ପଶିଲେ କି କରେ
ହୁଅ ସିଂହ ପରାକ୍ରମ
ସରସେ, କୁହାଯାଉଥାଏ ସିନା
ଉହାଇ ଉହାଇ ପୁଟ ଦେଲେ ହେଲେ
ଲୁହା କି ହୋଇବ ସୁନା ? ୩ ।

# ରହସ୍ୟମଞ୍ଜରୀ

ଦେବଦୁର୍ଲ୍ଲଭ ଦାସ

( ରାଗ—ମଲ୍ଲାର)

ଭକ୍ତକବି ଦେବଦୁର୍ଲ୍ଲଭ ଦାସ ଷୋଡ଼ଶ ଶତାବ୍ଦୀରେ ଜୀବିତ ଥିଲେ । ତାଙ୍କର ଏକମାତ୍ର କାବ୍ୟ ରହସ୍ୟ-ମଞ୍ଜରୀ ପ୍ରକାଶ ପାଇଅଛି । ସେ ଜଣେ ପ୍ରକୃତ ବୈଷ୍ଣବ ସାଧକ ଓ ଧର୍ମାନୁରାଗୀ ଥିଲେ । ଜୟଦେବଙ୍କ ପରି ସେ ମଧୁର, କାନ୍ତ ଓ କୋମଳ ପଦାବଳୀରେ ତାଙ୍କର କାବ୍ୟଟିକୁ ଭୂଷିତ କରିଅଛନ୍ତି । କବି ବାହ୍ୟ ପ୍ରକୃତି ବର୍ଣ୍ଣନାରେ ଅତ୍ୟନ୍ତ ସିଦ୍ଧହସ୍ତ ଥିଲେ ।

ତରୁଣ ଅରୁଣ ରାଜେ (ତହିଁ) କନକ ନୂପୁର ସାଜେ
କଟି କିଙ୍କିଣୀ ଘଣ୍ଟି ଠଣରଣ କଙ୍କଣ ଝଙ୍କ ବାଜେ
ସଖି । ତୁ ଯାଜକନା (ଗୋ) କହ୍ନାଇ ପାଶକୁ ଯାଜକନା
ରତନ ବସନ ହାର କଙ୍କଣ ଯାହା ମାଗୁ ତାହା ନଜକନା । ୧ ।

ସଜଳ ଜଳଦ କାନ୍ତ ନୀଳମଣି ଜିଣି ଜ୍ୟନ୍ତ
ଅମଳ କମଳ ମୁଖ ମଞ୍ଜୁଳ ଅଳକ ଅଳକାପନ୍ତ
ଗୋ ଦୂତି । ତୁ ଯାଜକନା । ୨ ।

ଅରୁଣ ଅଧର ରାଜେ ମୁରଲୀ ମଧୁର ବାଜେ
ନାସେ ମୋତିବର ଗଗନେ କି ଶୁକ୍ର ଅଧର ପରେ ବିରାଜେ
ଗୋ ସଖି । ତୁ ଯାଜକନା । ୩ ।

ଭାଲେ ଚନ୍ଦନର ବିନ୍ଦୁ (ଗୋ) ନବଢ଼ ଜଳଦେ ଇନ୍ଦୁ
ମଣ୍ଡିତ କୁଣ୍ଡଳ ଗଣ୍ଡମଣ୍ଡଳ ଚଣ୍ଡକିରଣ ନିନ୍ଦୁ
ଗୋ ଦୂତି । ଯାଜକନା । ୪ ।

କୁଟିଳ କୁନ୍ତଳ ଚୁଳେ                    ରଞ୍ଜିତ ବିବିଧ ଫୁଲେ
ବାନ୍ଧେ ଝଲମଲ ମୟୂରପୁଚ୍ଛ ମତ୍ତ ମଧୁକର ଭୁଲେ
ଗୋ ସଖି ! ତୁ ଯାଉଁକିନା ! ୫ ।
ମୋତେ ସଜ କର ସଖି !        (ମୁଁ) କହ୍ନାଇଙ୍କୁ ଯିବି ଦେଖି
ମୁରଲୀ ବଜାଇ ମନ୍ଦ ମନ୍ଦ କରି ବୁଲୁ ଠାଉଁଥାଇ ଆଖି
ଗୋ ଦୂତି ! ତୁ । ୬ ।
ମୋର ଚରଣେ ଦିଅ ପାହୁଡ଼     (ମୁଁ) ବନେ କରୁଥିବି ଧାଉଡ଼
ପାଦ ରୁଣଝୁଣ ଶବଦ ଶୁଣିଣ କହ୍ନାଇ ଅନାଇବ ବାହୁଡ଼
ଗୋ ସଖି ! ୭ ।
ନେତପିନ୍ଧିଦିଅ ମଣ୍ଡାପଡ଼ିଆ     (ମୁଁ) କହ୍ନାଇଙ୍କି ଯିବି ଲୋଡ଼ିଆ
ଖଞ୍ଜି କରେ ଚୁଡ଼ି ଗୁଞ୍ଜରବନ୍ଧ ସମନ୍ୱିଥ ଗରଗଡ଼ିଆ
ଗୋ ସଖି ! ୮ ।
କୃଷ ଦାମ ପରି ବନ୍ଦ           (ମୋର) ବାହୁଟି ଉପରେ ବାନ୍ଧ
ଶ୍ରବଣେ ଭିର ମୋ ଝଲକ ଚନ୍ଦ ଫେର ତା ମୁକୁତାବନ୍ଧ
ଗୋ ସଖି ! ଯାଉଁକିନା ! ୯ ।
(ମୋର) ମୁକୁତା ପାଞ୍ଚଗୋଟିଅ     (ଖଞ୍ଜିଦେ) ମୋର ନାସାପୁଟିଅ
କହ୍ନାଇ ପାଣକୁ ବାଜ ଯାଉଥିବ ଝମକ ଝମକ ଝୁଣ୍ଟିଆ
ଗୋ ସଖି ! ୧୦ ।
ଏତେ କହି କରି ବାଳୀ               ମୋହେଣ ପଙ୍କଜ ତଳି
ଧାଇଁ ଧରି ସଖୀ ଶ୍ୱେଦନ କରନ୍ତି ଅଳଟ ଗୁମର ଚାଳି
ଗୋ ସଖି ! ୧୧ ।
ଗୋବିନ୍ଦ ଗୋବିନ୍ଦ ବାଦ୍ୟ            ଗଗନେ ଉଠିଲେ ନାଦ
ଦେବ କହେ ପ୍ରଭୁ କେବେହେଁ ନୋହିବ
ଗୋବିନ୍ଦ ଭବ ବିଚ୍ଛେଦ । ୧୨ ।

# ଶିବ ରାଜା କଥା

## ରାଜା ୰ କୃଷ୍ଣ ସିଂହ

ଏହି କବି ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଧରାକୋଟ ରାଜ୍ୟର ରାଜା ଥିଲେ । ସେ ୧୭୨୯ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରି ୧୭୮୮ ଖ୍ରୀଷ୍ଟାବ୍ଦରେ ଇହଧାମ ତ୍ୟାଗ କରିଥିଲେ । ଏହି ରାଜକବି ସଂସ୍କୃତ ମହାଭାରତକୁ ସରଳ ଓ ଲଳିତ ଓଡ଼ିଆ ଭାଷାରେ ଅନୁବାଦ କରିଥିଲେ । ଏହା ଛଡ଼ା ସଂସ୍କୃତ ହରିବଂଶର ଓଡ଼ିଆ ଅନୁବାଦ କବିଙ୍କର ଅନ୍ୟତର ରଚନା ।

ତହୁଁ ଯୁଧିଷ୍ଠିର ବୋଇଲେ ମାର୍କଣ୍ଡେୟ
କରଣ ଅମୃତାରେ ସଦୟ ହୃଦୟ ।

ପୂର୍ବେ କହିଥିଲ ବ୍ରାହ୍ମଣ ମହାଭାଗ୍ୟ
ଏବେ କହ ରାଜନ୍ୟ ମାହାତ୍ମ୍ୟ ମହାଭାଗ ।

ମାର୍କଣ୍ଡେୟ ବୋଇଲେ ପଚାରିଲ ଯେବେ
ତାହା ଶୁଣ କହିବା ବସି କରି ଏବେ ।

କୁରୁଠାରୁ ଯେ ଅନୁଅଳ ପୁରୁଷରେ
ସୁହୋତ୍ର ରାଜା ହେଲେ ହସ୍ତିନା ଦେଶରେ ।

ଦିନେ ସେ ଋଷିଙ୍କର ଆଶ୍ରମକୁ ଯାଇ
ଆସିବା ବେଳେ ବାଟେ ଦେଖିଲେ ନୃସାଇଁ ।

ଶିବପୂଜା ବାହାରିଛନ୍ତି ସେହି ବାଟେ
ନୋହିଲେ ବାଟ ଛଡ଼ାଛଡ଼ି ନୋହି ଥିଣ୍ଟେ ।

ନାରଦ ସେହି ସମୟରେ ସେହିଠାରେ
କହିଲେ ଏ କଥା ପ୍ରବେଶ ମାଦକରେ ।

କାହିଁକି ବାଟ ଛଡ଼ାଛଡ଼ି ନୋହି ତୁମ୍ଭେ
କହ ତ ଗୋଳ କରୁଅଛ ପୁଚ୍ଛୁ ଅମ୍ଭେ ।

ସେ ଦୁହେଁ ବୋଇଲେ ହେ ଅମ୍ଭେ ଦୁଇ ଲୋକ
ହୋଇଛୁ ତ ମହୀରେ ଅବଣୀମାନ୍ୟକ ।

ଅଧିକକୁ ଯିନା ଦିଅନ୍ତି ବାଟ ଛଡ଼ି
ସେ ସବାଙ୍କୁଁ ଯାଉଛୁଁ ବୋଧଇଲେ ବୁଢ଼ି ।

ନାରଦ ବୋଇଲେ ହେ ତୁମ୍ଭ ଦୁହିଙ୍କରେ
ଯେ ମାନ୍ୟ ହେବ ସେହୁ ଯାଉ ଏ ବାଟରେ ।

ଏହା ଶୁଣି ସୁହୋଦ ଶିବଙ୍କି ପ୍ରଦକ୍ଷିଣ
କରିଣ ବାଟ ଛାଡ଼ିଦେଲେ ନରତ୍ରାଣ ।

ଶିବଙ୍କର ଭାଗ୍ୟ ନାରଦ ସୁହୋଦଙ୍କୁ
ସେଠାରେ ଯା କହିଲେ କହିବା ତୁମ୍ଭଙ୍କୁ ।

ଶିବଙ୍କଠାକୁ ଦିନେ ଦ୍ୱିଜ ଜଣେ ଗଲେ
ଶିବ ତାହାଙ୍କୁ ପୂଜା କରି ପଚାରିଲେ ।

କେଉଁ କଥା ତୁମ୍ଭର କରିବା ଗୋସାଇଁ
ନ କହ କିଛି କପିଁ ରହ ତୁନି ହୋଇ ?

ସେ ବ୍ରାହ୍ମଣ କୋଇଲେ ବୃହଦ୍ଗର୍ଭସୁତ
ମାର ମୋ ପାଇଁ କର ମାଂସ ଭୂଲେ ଭାତ ।

ଶିବ ସେ ବ୍ରାହ୍ମଣର ବଚନ ମାନିଲେ
ପୁଅକୁ ମାରି ତାର ମାଉଁସ ରାନ୍ଧିଲେ ।

ପାତ୍ରୁଟିକେ ଅନ୍ନ ଥାଳରେ ତାହା ଧରି
ଖୋଜିଲେ କାହିଁ ଗଲେ ବୋଲି ତପସ୍ଵୀ ।

ସେହି କାଳରେ ଜଣେ କହିଲା ତାହାଙ୍କୁ
ସେ ବ୍ରାହ୍ମଣ ଯୋଉଛି ତୁମ୍ଭର ନଗରକୁ ।

ଏହା ଶୁଣି ଶିବ ବ୍ରାହ୍ମଣ ପାଶେ ଗଲେ
ସିଦ୍ଧ ହୋଇଛି ଅନ୍ନ ତୁମ୍ଭର ବୋଇଲେ ।

ବ୍ରାହ୍ମଣ ଶିବଙ୍କ କରମେ ତୋଷ ହୋଇ
ମୁଣ୍ଡ ପୋଛ କରି ରହିଲେ ତୁନି ହୋଇ ।

ଶିବ ବୋଇଲେ ହେ ପ୍ରସନ୍ନ ହୋଇ ମୋତେ
ଭୁଞ୍ଜ ମୋ ଦେବା ଅନ୍ନ ଦ୍ୱିଜ ମହାମତେ ।

ମୁହୂର୍ତ୍ତେ ତୁନି ହୋଇ କହିଲେ ବ୍ରାହ୍ମଣ
ତୁମ୍ଭେ ଭୁଞ୍ଜ ରାଜନ ସେ ଅନ୍ନ ଆପଣ ।

ଶିବ ମନେ କିଛି ବିକାର ନ ଘେନିଲେ
ଖାଇବାକୁ ସେ ଅନ୍ନ ହାତ ବଢ଼ାଇଲେ ।

ସେ ବ୍ରାହ୍ମଣ ସେକ୍ଷଣି ଧରି ଶିବହାତ
ବୋଇଲେ ତୁମ୍ଭପରି ତୁମ୍ଭେ ନୃପସୁତ ।

ଯେଉଁ ପୁଅକୁ ସେହୁ ହାଣି ପକାଇଲେ
ସେହି ପୁଅକୁ ଶିବ ଆଗରେ ଦେଖିଲେ ।

ଏଥୁ ଅନନ୍ତରେ ସେଠାରୁ ଦ୍ୱିଜବର
ଲମ୍ଫଦେଇ ଦେଲେ ଶୂନ୍ୟମାର୍ଗରେ ଶରୀର ।

ଜାଣ ଅହେ ମୁହୋନ ସେହୁଟି ବିଧାତା
ଆସିଥିଲେ ବୁଝି ଶିବଙ୍କ ବିବେକତା ।

ଏ ଅନ୍ତରେ ଶିବଙ୍କି ବୋଇଲେ ମନ୍ତ୍ରୀଏ
କି କାର୍ଯ୍ୟ ପାଇଲ ପୁଅକୁ ମାରି ସ୍ୱୟେ ।

ଶିବ ବୋଇଲେ ମୁହିଁ ସାଧୁଙ୍କର ମାର୍ଗ
ନ ଛାଡ଼ିବ ବୋଲି ମାଇଲି ପୁଅ ଅଗ ।

ଅହେ ଯୁଧିଷ୍ଠିର ଏହରୂପେ ନାରଦ
ଟିବି ମହାଭାଗ୍ୟ କହୁଲେ ହୋଇ ମୋଦ ।

ତୁମ୍ଭେ ତାହା ଏବେ ଶୁଣିଲ ଭଲ କରି
ସଂଶୟ ହୃଦୟରୁ ଦିଅ ଦୂର କରି ।

ମାର୍କଣ୍ଡେୟ ବୋଇଲେ ଶୁଣ ନୃପବର
କହୁବା ଅଜ୍ଞ ଏକ ନୃପ ସମାଗ୍ନର ।

ଯଯାତି ରାଜା ଦିନେ ସଭାରେଟି ଥିଲେ
ବ୍ରାହ୍ମଣ ଜଣେ ଆସି ଏମନ୍ତ ବୋଇଲେ ।

ଗୁରୁଙ୍କ ପାଇଁ ମୁଁ ଆସିଛି ଭିକ୍ଷା କରି
ଜଣାଇବ ଅଞ୍ଜ ହୋଇଲେ ଦଣ୍ଡଧାରି ।

ଯଯାତି ବୋଇଲେ କି ଦ୍ରବ୍ୟ ମାଗିବାର
ଅଛି ତା ବ୍ୟକ୍ତ କଲେ ଦେବୁଁ ବିପ୍ରବର ।

ବ୍ରାହ୍ମଣ ବୋଇଲେ ଯେ ଏ ଜୀବଲୋକରେ
ମାଗିବା ଲୋକକୁ ବିଦ୍ୱେଷ କରେ ନରେ ।

ଜାରୁପେ ପ୍ରିୟବସ୍ତୁ ଦେବା ଇଚ୍ଛା କର
ପଚାରୁଛ ଆଗ୍ରହେ ଛନ୍ଦ ଦଣ୍ଡଧାର !

ବୋଇଲେ ରାଜା ବଡ଼ ନୁହେଁ ଦ୍ରବ୍ୟଦାନ
ମାଗିଲେ ଦେବୁଁ ସ୍ତ୍ରୀ ପୁତ୍ର ନିଜ ପ୍ରାଣ ।

ଦ୍ୱିଜ ମହାନନ୍ଦେ ବୋଇଲେ ସହସ୍ରେକ
ଗାଈ ମୋତେ ଦିଅ ହେ ଅବନୀନାୟକ ।

ଯଯାତି ସେହିକ୍ଷଣି ତାହା ଦାନ କଲେ
ବ୍ରାହ୍ମଣ ନେଇ ଗୁରୁ ପାଶେ ତାହା ଦେଲେ ।

# ଦରବାର

## ୰ ରାଧାନାଥ ରାୟ

( ନଟବାଣୀ ବୃତ୍ତ )

କବିବର ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ କେଦାର-
ପୁର ଗ୍ରାମରେ ୧୮୪୮ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ
୨୮ ତାରିଖରେ ଜନ୍ମଗ୍ରହଣ କରିଥିଲେ । ନାନା
ରୋଗବଶତଃ ତାହାଙ୍କର ବାଲ୍ୟଶିକ୍ଷାରେ ବହୁ
ବାଧାବିଘ୍ନ ପଡ଼ିଥିଲେହେଁ, ସେ ସ୍ୱୀୟ ମେଧା ଓ
ସ୍ମରଣଶକ୍ତିର ପରିଚୟ ଦେଇଥିଲେ । ରାଧାନାଥ
ଷୋଳବର୍ଷରେ ଏଣ୍ଟ୍ରାନସ୍ ପାଶ କରି ଅସୁସ୍ଥତା-
ବଶତଃ ଉଚ୍ଚ ଶିକ୍ଷାଲାଭରେ ଅସମର୍ଥ ହୋଇ
ଶିକ୍ଷକ କାର୍ଯ୍ୟ ଗ୍ରହଣ କରିଥିଲେ । ଏହି କାର୍ଯ୍ୟ କରୁ-
ଥିବାବେଳେ ସେ ନିଜର ଅଧ୍ୟବସାୟ ବଳରେ
ଘରୋଇ ଭାବରେ ଏଫ୍. ଏ. ପରୀକ୍ଷା ଦେଇ ସୁନାମ
ସହିତ କୃତକାର୍ଯ୍ୟ ହୋଇଥିଲେ । ତତ୍ପରେ ସେ
ସଂସ୍କୃତ, ଓଡ଼ିଆ, ବଙ୍ଗଳା ଓ ହିନ୍ଦୀଭାଷାରେ ବହୁ
ଗ୍ରନ୍ଥ ଆଲୋଚନା କରିଥିଲେ । ଏହିଠାରୁ
ରାଧାନାଥଙ୍କର କବି-ଜୀବନ ଆରମ୍ଭ ହୋଇ
ଥିଲା । ରାଧାନାଥ ସେତେବେଳେ ବଙ୍ଗଳାରେ
କେତେକ କବିତା ଲେଖି ଖ୍ୟାତି ଲାଭ କରି
ଥିଲେ । ତାଙ୍କ ପ୍ରଣୀତ ରଚନାବଳୀ ଅଧୁନା
'ରାଧାନାଥଗ୍ରନ୍ଥାବଳୀ' ନାମରେ ଖ୍ୟାତ । ସେ
୧୯୦୮ ଖ୍ରୀଷ୍ଟାବ୍ଦର ଏପ୍ରିଲ ମାସ ୧୭ ତାରିଖରେ
ମୃତ୍ୟୁ ବରଣ କରିଥିଲେ ।

*  *  *  *

ଭଗ୍ନ ଘଟୁଁ ଅହା ସଲିଳ ଯେସନ
ସରି ଯାଉଅଛି ଆୟୁ ପ୍ରତିକ୍ଷଣ ।
ବଣ୍ଡ କ୍ରୂର କାଳ ବଡ଼ ଅବିଶ୍ୱାସୀ
ହାବୋଡ଼ିଯିବ ସେ ଅଚମ୍ବିତେ ଆସି ।

ଦୂରବର୍ତ୍ତୀ ଜାଣି କାଳକୁ ଯେ ହସେ
ହସି ସେ ତା ପଛେ ଆସି ଲୁଚି ବସେ ।
ମାଡ଼ବେଳ ବୁଝି ଝମ୍ପରେ ହାଜର
ହେବା ବଧି ତାଙ୍କୁ ନାହିଁଟି ଗୋଚର ।

କେତେ ଦିନ ଚେତ୍ତିଥିବ ଏହି ଖେଳ ?
ପାଖେଇ ଆସୁଛି ସେ ଅନ୍ତିମ ବେଳ ।
ଆସୁଛି ମାଗିବେ ସେଦ୍ଧ ପ୍ରତିକ୍ଷଣେ
ନିତ୍ୟଗାମି-ରଥଚକ୍ର-ଆବର୍ତ୍ତନେ ।

ଆୟୁ-ସୂର୍ଯ୍ୟ ଯାଏ ଢଳେ ଯେତେ ଗଡ଼ି
ଛନ୍ନ ମାୟା ଯାଏ ଛାୟା ପରି ବଢ଼ି ।
ମାୟା-ଡେର ତଳେ ଭେଦିବ ଯେଉଁକ
ଅନ୍ତକ ଉଗଡ଼େ ହିଙ୍କିବ ତେଉଁକ ।

ସେ କଠିନ ହିଙ୍କାହିଙ୍କିରୁ ନିସ୍ତାର
ଲଭି ଲଗି ଅଟୁଁ ହୁଅ ହୁସିଆର ।
ବେଳ ଥାଉଁ ଥାଉଁ ଅରଜି ଧରମ
ଜନ୍ମ-ଅନୁରୂପେ ଦେଖାଅ କରମ ।

ଜନ୍ମଫଳେ ଭବେ ବନ୍ଧପଣ ପାଇ
ଧର୍ମଫଳେ ତାକୁ କର ଚିରସ୍ଥାୟୀ ।

ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର-ବାରିଧି ।
ଧର୍ମ ଏକା ସିନା ମହତପଣିଆ
ଆଉ ବଡ଼ପଣ ଅଢ଼େଇଦିନିଆ । ୬.

ବଡ଼ପଣ ଭାଇ ! ଏକା ସିନା ସେହି
ଛଡ଼ାଇ କେହି ଯା ନ ପାରଇ ନେଇ
ବଡ଼ପଣ ସେହି ଅନ୍ତେ ସୁଦ୍ଧା ଯା'ର
ଗୌରବେ ଚହଟୁଥାଏ ଏ ସଂସାର ।

ବଡ଼ପଣେ ସିନା ସେହି ତାକୁ ଗଣି
ଯେଉଁ ବଡ଼ପଣ ଦ୍ୱିଲୋକ-ସାଧନୀ ।
ସେହି ସିନା ବଡ଼ପଣ ଯହିଁ ଲାଗି
ଅନ୍ତକର ବଜ୍ର-ଦନ୍ତ ଯାଏ ଭାଗି ।

ସେହି ବଡ଼ପଣେ ବଳାଅ ମହକ
କାଳ ନ ପାରିବ ପଶି ଯା କଟକ ।
ହେଳା କର ନାହିଁ ପାଇ ଏ ସୁବିଧା
ଲଭିବାକୁ ସେହି ବଡ଼ପଣ ନିଦା ।

ସଂସାରର ତୁଚ୍ଛସାର ବଡ଼ପଣ—
ଲାଳସାରୁ ନିଅ ବାହୁଡ଼ାଇ ମନ ।
ଉଦାସୀନ ନେହେ ଦୁନିଆର ମାନ
ଦେଖି କର ମନ ଧର୍ମେ ଏକତାନ,

ସ୍ୱଜଧର୍ମେ ଅମୃତତ୍ତ୍ୱେ ଦେଇ ମତି
ଜଗ ହୋଇ ଲଭ ଉଚ୍ଚତର ଗତି ।

* * * *

# ଦେବୀଦ୍ୱାରରେ ସୂର୍ଯ୍ୟାସ୍ତ

৺ ରାଧାନାଥ ରାୟ

( ନଟବାଣୀ ବୃତ୍ତ )

ଡୁବିଲା ବନାନ୍ତେ ତପ୍ତ ହେମଛବି
ଧୀରେ ଦେବୀଦ୍ୱାର ଗିରିଶୃଙ୍ଗେ ରବି ।
ପୀତ କରଜାଲେ ଝଳୁଛି ଭୁବନ
ସୁଖସ୍ୱପ୍ନ ପ୍ରାୟେ ହରେ ଜନମନ ।
ବାରୁଣୀ ଗଗନ ପ୍ଲାବିତ ପ୍ରଭାରେ
ଗନ୍ଧର୍ବନଗରୀ ଶୋଭାକୁ ଧିକ୍କାରେ ।
ବାରୁଣୀରାଣୀ କି ପିନ୍ଧି ସ୍ୱର୍ଣ୍ଣଚେଳ
ସଖୀ ସଙ୍ଗେ ଖେଳୁଛନ୍ତି ଫଗୁଖେଳ ।
ସୁବର୍ଣ୍ଣ ବିମାନ, ସ୍ୱର୍ଣ୍ଣରଥ ଦୋଳା
ନଭସ୍ତଳେ କେତେ ହୋଇଛନ୍ତି ତୋଳା
ସୁବର୍ଣ୍ଣର ନଦେ ବହେ ସ୍ୱର୍ଣ୍ଣସ୍ରୋତ
ସୁବର୍ଣ୍ଣଅମ୍ବାଲେ ଚଳେ ସ୍ୱର୍ଣ୍ଣପୋତ ।
ସୁବର୍ଣ୍ଣମନ୍ଦିରେ ସୁବର୍ଣ୍ଣଆସନ
ତହିଁ କି ବସିଛି ଦେବବେହରଣ ।
ଦୂରେ ବାଳିରାଣି ମିଶିଛି ଗଗନେ
ବିଭୂଷିତ ସନ୍ଧ୍ୟା-କନକ-କିରଣେ ।
ସାରଙ୍ଗଗଡ଼ରୁ ଅଠଗଡ଼ ଯାଏ
ଶୋଭେ ଶୈଳ ନୀଳ ପ୍ରାଚୀର ପରାୟେ ।
ଠାବେ ଠାବେ ତୁଙ୍ଗ ନୀଳ ଶୃଙ୍ଗମାଳା
ଶୋଭେ ଯେସନ୍ତେ ଇନ୍ଦ୍ରନୀଳ ଚନ୍ଦ୍ରଶାଳା ।

ଉଚ୍ଚତାରେ ଦେଇ ସର୍ବ ଶୈଳେ ଲଙ୍ଘା
ଟେକିଛି ଶିଖର ଗିରି ସପ୍ତଶଯ୍ୟା ।
ମଣ୍ଡିଛନ୍ତି ସ୍ୱର୍ଣ୍ଣକରେ ଗ୍ରହରାଜ
ବୌଦ୍ଧକୀର୍ତ୍ତି-ରାଜିମଣ୍ଡିତ ନଗରାଜ ।୮.
ଉତ୍ତରେ ବିରାଜେ ଶୈଳ ସର୍ବେଶ୍ୱର
ସର୍ବେଶ୍ୱରୀ ଯାର ଧୂଅଇ ପୟର ।
ବକ୍ରଗାମୀ ସ୍ରୋତେ, ବିସ୍ତୃତ ସୈକତେ
ସନ୍ଧ୍ୟାରାଗ ଖେଳୁଅଛି ନାନାମତେ ।
ସ୍ୱଚ୍ଛ-ସ୍ରୋତଜଳେ ପୀତ ରବି-ରୁଚି
ପଡ଼ି, ବୀଚିମାଳା ହଲୁଛି ଝଲୁଛି ।
ଧୂମାକାରେ ଦୂରେ ପର୍ବତର ଛାଇ
ମାଡ଼ି ଆସୁଅଛି ଜଳ ସ୍ଥଳ ଛାଇ ।
ରଥାଙ୍ଗୀ ଭ୍ରମଇ କାଠପୋଡ଼-ନୀରେ
ଥରେ କାନ୍ତେ ଥରେ ଅନାଇ ମିହିରେ ।
ପଟିଆ ଦହରୁ ପକ୍ଷୀ ଦଳେ ଦଳେ
ଉଡ଼ି ଆସୁଛନ୍ତି ନଭେ କୋଳାହଳେ ।
ଗଉଡ଼େ ମଧୁରେ ମୁରଲୀ ବଜାଇ
ପଡ଼ାରୁ ଗୋଠରୁ ଆଣୁଛନ୍ତି ଗାଈ ।
ଗୁହୁଁ ଗୁହୁଁ ରବି ହେଲେ ଅସ୍ତମିତ
ପଶ୍ଚିମାଶା ହେଲା କୁଙ୍କୁମେ ଛୁରିତ ।
କେତେ ରୂପ ଧରୁଅଛି ଚକ୍ରବାଳ
ଦେଖାଉଛି ନବ ନବ ଇନ୍ଦ୍ରଜାଲ ।
ରକ୍ତ, ପୀତ, ନୀଳେ ଚିତ୍ର କରି ନଭ
ଭିଆଉଛି ନାନା ବର୍ଣ୍ଣେ ବର୍ଣ୍ଣୋତ୍ସବ ।

ତାରାଟିଏ ଫୁଟି ଗୋଧୂଳି-କୁନ୍ତଳେ
ଦେଖୁଅଛି ମୁଖ କାଠଯୋଡ଼-ଜଳେ ।
ପର୍ବତକନ୍ଦରୁ ବାହାରି ଅନ୍ଧାର
ଦ୍ରୁମ ସବୁ କରୁଅଛି ଏକାକାର ।
ଚଞ୍ଚଳପଦେ ଘୋଟି ତିମିର-କାଳିମା
ଲିଭିଗଲା ଜଳ ସ୍ଥଳ ବ୍ୟୋମସୀମା ।

* * * *

## 'କବିତା ବାହୁଡ଼ୀ'

୰ ଫକୀରମୋହନ ସେନାପତି

( ରାଗ—ମଙ୍ଗଳ )

ଏହି କବି ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ମଲ୍ଲିକାଶପୁର ଗ୍ରାମରେ ୧୮୪୩ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସେ ଅନେକ ବିଭିନ୍ନ କର୍ମକ୍ଷେତ୍ରରେ ଅବସ୍ଥ ଥାଇ ସ୍ୱକା ସ୍ୱୀୟ ଅଧ୍ୟବସାୟ ଓ ପ୍ରତିଭାବଳରେ 'ମାମୁଁ' 'ଲଛମା' ଓ 'ଛମାଣ ଆଠଗୁଣ୍ଠ' ପ୍ରଭୃତି ଉପନ୍ୟାସ ଏବଂ 'ଅବସରବାସରେ', 'ପୁଷ୍ପମାଳା', 'ଉପହାର', 'ବୌଦ୍ଧାବତାର କାବ୍ୟ' ଓ 'ପୁଜାଫୁଲ' ପ୍ରଭୃତି କାବ୍ୟ ପୁସ୍ତକ ପ୍ରଣୟନ କରି ଯାଇଛନ୍ତି । ସେ ୧୯୧୮ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କରିଥିଲେ ।

ଭଗବତୀ ବୀଣାପାଣି ଶ୍ରୀହସ୍ତପାଳିତା
ତ୍ରିଭୁବନସଞ୍ଚାରଣୀ ବହ୍ନଗୀ କବିତା ।

ଆଶ୍ରମରେ ଧ୍ୟାନମଗ୍ନ ବାଲ୍ମୀକି ମହର୍ଷି
ମାନସ-ମନ୍ଦରେ ନୀଡ଼ କରମିଲେ ଋଷି ।

ସେ ଅମରୀ ବହ୍ନଗୀର କଳ୍ପନା ଜନନୀ
ପ୍ରଚ୍ଛନ୍ନ ମାନସରୂପା, ଧାତ୍ରୀସ୍ୱରୂପିଣୀ ।

ସପ୍ତ ସ୍ୱର ସପ୍ତ ପଦ, ଅକ୍ଷର ଦେହରେ
କୁତୁହଳେ ବାହାରିଲେ ମହର୍ଷି ହସ୍ତରେ ।

ଛନ୍ଦ ଅଳଙ୍କାରେ ଅଙ୍ଗ କରି ବିମଣ୍ଡନ
ଏଥୁ ଅନ୍ତେ ଭୂମଣ୍ଡଳେ କଲେ ବିଚରଣ ।

ମହର୍ଷି ବ୍ରହ୍ମର୍ଷିଗଣେ ସରସ୍ୱତୀକୂଳେ
ସାମବେଦ ଗାଉଥିଲେ ଦେବୀ ଅନୁକୂଳେ ।

ସୁଧାମୟ ଇତିବୃତ୍ତ ସ୍ୱର୍ଗ ସମାଚାର
ମାନବମଣ୍ଡଳେ କଲେ ଜଗତେ ପ୍ରଚାର ।

# ଉତ୍କଳଭାରତୀଙ୍କ ଉକ୍ତି

## ୮ ଗଙ୍ଗାଧର ମେହେର

ଏହି କବି ୧୮୬୨ ମସିହା ଅଗଷ୍ଟ ମାସ ୯ ତାରିଖ ଦିନ ସମ୍ବଲପୁର ଜିଲ୍ଲା ଅନ୍ତର୍ଗତ ବରପାଲି ଗ୍ରାମରେ ଭୂମିଷ୍ଠ ହୋଇଥିଲେ । କବି ଜାତିରେ ତନ୍ତୁବାୟ ଥିଲେ । ଦାରିଦ୍ର୍ୟ ହେତୁ ଉଚ୍ଚଶିକ୍ଷା ଲାଭ କରି ନ ପାରି ପରିବାର ପୋଷଣ ନିମିତ୍ତ ସ୍ୱୀୟ କୌଳିକ ବ୍ୟବସାୟ କରୁଥିଲେ । ତଥାପି ଅବସର ସମୟରେ ନାନା ଶାସ୍ତ୍ରାଧ୍ୟୟନରୁ ବିରତ ହେଉ ନ ଥିଲେ । ଏପରି କି ତନ୍ତ ଚର୍ଚ୍ଚା ଓ ଗ୍ରନ୍ଥ ଚର୍ଚ୍ଚା ଏକ ସମୟରେ ହେଉଥିଲା । କବିଙ୍କ ସ୍ୱରଚିତ ଗ୍ରନ୍ଥମାନଙ୍କରେ ତାହାଙ୍କର ପ୍ରତିଭା ଓ ମୌଳିକତାର ଯଥେଷ୍ଟ ପରିଚୟ ଦେଇଅଛନ୍ତି । କବି ଗଙ୍ଗାଧର ଅଦ୍ୟ ମରଜଗତରେ ନାହାନ୍ତି ସତ୍ୟ; ମାତ୍ର ତାହାଙ୍କ ରଚିତ ଇନ୍ଦୁମତୀ, ତପସ୍ୱିନୀ, ପ୍ରଣୟବଲ୍ଲରୀ, ଅର୍ଘ୍ୟଥାଳି, ଉତ୍କଳଲକ୍ଷ୍ମୀ, କୀଚକବଧ ପ୍ରଭୃତି କାବ୍ୟ ତାହାଙ୍କୁ ଅମର କରି ରଖିଅଛି । କବି ୧୯୨୪ ଖ୍ରୀଷ୍ଟାବ୍ଦର ଏପ୍ରିଲ ମାସ ୪ ତାରିଖ ଦିନ ଦେହତ୍ୟାଗ କରିଥିଲେ ।

ଛନ୍ଦ ବାବୁ ମୋର                    କୋମଳ ବସନ
ଅଙ୍ଗକୁ ଯନ୍ତ୍ରରେ ନ ହେବ ପୀଡ଼ା

ଦେବ ହେଲେ ଦଅ                    ଏମନ୍ତ ଭୂଷଣ
ଯାହା ଘେନି ମୋର ନ ହେବ ବ୍ରୀଡ଼ା ।

ଅଙ୍ଗ ବୃଦ୍ଧି ଦଅ                    ଯୋଗ୍ୟ ପରିଚ୍ଛଦ
ପରିଚ୍ଛଦ ଯୋଗୁଁ ନ କାଠ ଦେହ

ଛନ୍ଦା ହେଲେ ହେବ                    ଜୀବନେ ବିପଦ
ନ କର ମାତାକୁ ସେପରି ସ୍ନେହ ।

ନଖ ବଢ଼ିଥିଲେ                    କର କରତନ
ରଞ୍ଜିଦଅ ତହିଁ ଅଳତା ରଙ୍ଗ

ନାକ ବଡ଼ ଥିଲେ,                    ତା କଲେ ଛେଦନ
ହେବ ନାହିଁ କି ମୋ ସୌଷ୍ଠବଭଙ୍ଗ ?

ରୋଗ ଥିଲେ ଦେହେ                    ପ୍ରତିକାର କର
ପ୍ରକୃତିସ୍ଥ ହେଉ ଜୀବନ ମୋର

ଭଲ ବର୍ଣ୍ଣେ ଯଦି                    ରଞ୍ଜ କଳେବର
ହେବ ମାତ୍ର ତହିଁ ବୀଭତ୍ସ ଘୋର ।

ତୁମ୍ଭେ ମୋତେ ଯେଉଁ                    ବେଶରେ ସାଜିବ
ସେ ବେଶ ଦେଖିବେ ଜଗତଜନେ

ତୁମ୍ଭେ ଯଦି ମୋତେ                    ଯତନେ ମାଜିବ
ମାର୍ଜିତ ଉଜ୍ଜ୍ୱଳ ହେବି ଭୁବନେ ।

ଦେଉଁ ଦେଉଁ ମୋର                    ନୟନେ ଅଞ୍ଜନ
ମୁଖ ଯଦି ହେବ କାଳିମାମୟ

ପୋଛ ଗଣ୍ଡ କାଳି                    ନ ଦେଇ ଗଞ୍ଜନ
ହେବ ମନୋହର କାନ୍ତି ଉଦୟ ।

ପାଇଥିଲେ ଦଅ ବଇଗା ପ୍ରସୂନ

ଥାଏ ଯଦ ତହିଁ କଛୁ ସୌରଭ

ସୌରଭ ନ ଥିଲେ କାନ୍ତରେ କଉନ

ନ ଥିଲେ ବଢ଼ିବ କିନା ଗୌରବ ।

ମସ୍ତକେ ମୋ ଝୋପି ନ ଦେବ ବାବା ରେ

ନ କାଢ଼ିବ ମୋର କରୁ କଙ୍କଣ

ସିନ୍ଦୁରବନ୍ଦୁ ମୋ ଭଲେ ରଖିବାରେ

କରନ୍ତର ମନେ ଥିବ ସ୍ମରଣ ।

ଭାଇ ଭାଇ ମଧ୍ୟେ କଳହ ନ କର

ତୁମ୍ଭ କଳହେ ମୁଁ ହେବ ଦୂଷିତ

ରତନ ସରହେ ହୁଅ ଯତ୍ନପର

ରତ୍ନ ଗୁନ୍ଥି ମୋତେ କର ଭୂଷିତ ।

ଅଭିମାନ-ବେଗେ ନ କର ପ୍ରଳାପ

ପ୍ରଳାପ ଶୁଣିଲେ କାନ୍ଦେ ମୋ ହୃଦ

ଜନେ ଧ୍ୟାନ ରଖି କର ସଦାଳାପ

ସଦାଳାପେ ସଦା ବଢ଼ୁ ମୋ ମୁଦ ।

ମନ୍ଦିରକୁ ମୋର କର ସୁସଜ୍ଜିତ

ରମ୍ୟ ରମ୍ୟ ଉପକରଣ ଆଣି

କାଠ ଖମ୍ବମାନ କର ସୁରଞ୍ଜିତ

ଢାଳଦଅ ତହିଁ ସୁବର୍ଣ୍ଣ ପାଣି ।

ନାନା ଦେଶୁଁ ଅଣ ତରୁ ବଲ୍ଲୀମାନ

ରୋପଣ କର ମୋ ଉଦ୍ୟାନଗର୍ଭେ

ଉଦ୍ୟାନ କରିବ ସୁଫଳ ପ୍ରଦାନ

ଭୁଞ୍ଜିବେ ସୁଖେ ମୋ ନନ୍ଦନ ସର୍ବେ ।

ଅବର୍ଜ୍ଜନାସ୍ଥାନ କର ମୋ ସଦନ
କର ଅବଶ୍ୟକ ଜୀର୍ଣ୍ଣ ସଂସ୍କାର
ମାନ୍ୟ ଧର୍ମ ରକ୍ଷି କର ବିଚରଣ
ନ କର ମୋ ପୁରେ ଯଥେଚ୍ଛାଚାରୀ ।
ନିଜ ଉନ୍ନତିକୁ ଉନ୍ନତି ନ ମଣ
ମୋତେ ନ କରିବାପାଏ ଉନ୍ନତ
ଏକ ତରୁତଳେ ଥିବେ କେତେ ଜଣ
ବନ୍ଧୁ ଜଳ ଫଳ ଦଏ ପର୍ବତ ।
ତୁମ୍ଭ ସ୍ୱଜ୍ୟ-ଭୂମି ପ୍ଲାବି ନ ପାରନ୍ତୁ
ଅଣ୍ଡିସ ଗିରିର ଅସଂଖ୍ୟ ଝର
କେ ହରିବ ତୁମ୍ଭ ହୃଦୟ-ତପତ
ନ ବହିଲେ ପୁତ ସ୍ରୋତ ମୋହର ?
ହୋଇ ଏକପ୍ରାଣ ହୋଇ ଏକମନ
ଉଚ୍ଚ ତାନେ ଗାଅ "ଭାରତୀ ଜୟ"
ଉଡ଼େ ଚେକ କୀର୍ତ୍ତି— ପତାକା, ଗଗନ
ହୋଇଯାଉ ଶୁଭ୍ର ପତାକାମୟ ।

# ଆଶ୍ରମେ ପ୍ରଭାତ

✓ ଗଙ୍ଗାଧର ମେହେର

ମଙ୍ଗଳେ ଅଇଲା ଉଷା   ବିକଚ-ସରୋଜ-ଭୂଷା
ଜାନକୀ-ଦର୍ଶନ-ତୃଷା ହୃଦୟେ ବହି,
ବରପଲ୍ଲବେ ନୀହାର——   ମୁକ୍ତା ଧରି ଉପହାର
ସତୀଙ୍କ ବାସ ବାହାର ପ୍ରାଙ୍ଗଣେ ରହି;
କଳକଣ୍ଠ କଣ୍ଠେ କହିଲା,
"ଦରଶନ ଦିଅ ସତି, ରାତି ପାହିଲା ।"

ଅରୁଣ କଷାୟ ବାସ,   କୁସୁମ କାନ୍ତି ବିକାଶ
ପ୍ରଶାନ୍ତ ରୂପ, ବିଶ୍ୱାସ ଦିଅନ୍ତି ମନେ,
କେଉଁ ଯୋଗେଶ୍ୱରୀ ଆସି   ମଧୁର ଭାଷେ ଆଶ୍ୱାସି
ଡାକୁଛନ୍ତି ଦୁଃଖରାଶି ଉପଶମନେ;
ଦେବା ପାଇଁ ନବଜୀବନ,
ସ୍ୱର୍ଗୁଁ କି ଓହ୍ଲାଇଛନ୍ତି ମର୍ତ୍ତ୍ୟଭୁବନ ।

ସମୀର ସଙ୍ଗୀତ ଗାଏ,   ଭ୍ରମର ବୀଣା ବଜାଏ,
ସୁରଭି ନର୍ତ୍ତନେ ଥାଏ ଉଷା ନିଦେଶେ,
କୁମ୍ଭାଟୁଆ ହୋଇ ଭାଟ   ଆରମ୍ଭିଲା ସ୍ତବପାଠ,
କଳିଙ୍ଗ ଅଇଲା ପାଟ ମାଗଧ ବେଶେ;
ଲଳିତ ମଧୁରେ କହିଲା,
"ଉଠ ସତୀରାଜ୍ୟରାଣି, ରାତି ପାହିଲା ।"

ମୃକମୁଖ-ବେଦସ୍ୱନ ପୂର୍ଣ୍ଣ କଲା ଶ୍ୟାମବନ,
ଜଟିଲା ଭେଦ ଗଗନ ଉଠ ଓଁକାର,
ବୈକୁଣ୍ଠେ ଦେଇ ତୃପତ ଅନନ୍ତ ଶ୍ରୁତିକ ଗତ
ବାହାଲ୍ଲ କ ସରସ୍ୱତୀ ବୀଣାଝଙ୍କାର;
ବେଳୁଁ ବେଳ ବନ ଉଜ୍ଜ୍ୱଳ,
ମନ୍ତ୍ରବଳେ ଯେସ୍ତେ ବଢ଼ି ଅସିଲ୍ଲ ବଳ ।
ଏ କାଳେ ବ୍ରହ୍ମଚାରିଣୀ ଅନୁକମ୍ପା ତପସ୍ୱିନୀ
ଅଧି ଜନକନନ୍ଦିନୀ ପାଶେ ଗମ୍ଭୀରେ,
ବୋଇଲେ, "ଉଠ ବୈଦେହ ! ଉଷା ସୁକୁମାରଦେହୀ
ଅସିଛ ଦର୍ଶନ ଦେଇ ତୋଷ ବଧୂରେ,
ତମସା ରହୁଛ ଅନାଇଁ,
କୋଲ କର ଥରେ ସୁଖ ଲଭିବା ପାଇଁ ।"
ପଦ୍ମିନୀ-ହୃଦ-ଶିଶିର— ବନ୍ଧୁର ଖରରଶ୍ମିର
ପ୍ରତିବିମ୍ବ ପରି ବୀର ରାମ ମୂରତି,
ଶୋକଙ୍କର୍ଷରେ ଚିତ୍ତ— ଫଳକେ କରି ଚିତ୍ରିତ
ହେଲେ ଅସନ୍ନ ଉତ୍ଥିତ ଜାନକୀ ସତୀ;
ନମି ଅନୁକମ୍ପା-ପଦ୍ମରେ,
ବନ୍ଦିଲେ ଉଷାର ପଦ ସବିନୟରେ ।
ବୋଇଲେ ତାକୁ ପ୍ରଶଂସି, "ତୁମ୍ଭେ ତମିର-ବିଧ୍ୱଂସି-
ରବି-ଅଗମନ-ଶଂସୀ ହୁଅ ସଂସାରେ,
ତୁମ୍ଭ କୋମଳ ଚରଣ କରେ ଜ୍ୟୋତି ଅବରଣ
ତହିଁ ଯାଉଛି ଶରଣ ଦୃଢ଼ ଆଶାରେ;
ଶୁଭ-ସଉରଭ ରସିକେ,
ଶୁଭ ସମ୍ପାଦନା ହୁଅ ରଘୁବଂଶୀକେ !"

ଜନ୍ମୁକ ହୃଦୟେ ସ୍ୱଦି— ଶେଷରେ ଅଶ୍ରମଧାନୀ
ତମସା ନିର୍ମଳ-ଗାନୀ ପବିତ୍ର-ଧାର,
ପ୍ରାଙ୍ଗଣେ କୁସୁମ ବନ୍ଦି ସୁବାସିତ ନୀର ସିଞ୍ଚି
ମଙ୍ଗଳ ପ୍ରଦୀପ ଜଳ ପ୍ରକୃତି ତାର
ମୃଦୁମୁର୍ତ୍ତି ମୀନ-ନୟନେ,
ଗୃହୁଁ ଥିଲ ସୀତା-ସତୀ ଶୁଭାଗମନେ ।
ଜ୍ଞତଜ ତାପସ କନ୍ୟା— ଗଣଙ୍କ ଅଦର-ବନ୍ୟା-
ପ୍ଲାବନେ ଜଗତ-ଧନ୍ୟା ସତୀ-ରତନ,
ବାହାର ଅବଗାହନେ ଅନୁକମ୍ପାଙ୍କ ଗହଣେ
ତମସା-ଧାର ବହନ କଲେ ଗମନ;
ସତୀଙ୍କି ତମସା ଅଙ୍କରେ
ଯେବେ ସ୍ନେହେ ଅଲିଙ୍ଗିଲ ତରଙ୍ଗ-କରେ ।
ଅମୃତ ମଧୁର ସ୍ୱରେ ଭଷିଲ ପରିତୋଷରେ,
"ମାଆ ଗୋ, ମୋ ମାନସରେ ନ ଥିଲା ଅଶା,
ଜଣବ ଅଙ୍କେ ବହାର ରାଜଲକ୍ଷ୍ମୀ-ହୃଦହାର
ସୀତା କର ପରିହାର ଭୋଗ-ପିପାସା,
ଭାଗ୍ୟବତୀ ମୋତେ ସଂସାରେ
ବୋଲିବେ ତୋ ଯୋଗୁଁ ଏକା ଯଶଂସାରେ ।
ବନେ ବନେ ଭ୍ରମି ଭ୍ରମି ଗଣ୍ଡ-କୂହୁକେ ନ ଭ୍ରମି
ବହୁ ବାଧା ଅତିକ୍ରମି ସ୍ୱଚ୍ଛ ଜୀବନେ,
ଅନ୍ଧାର ଦୁଃଖ ନ ଗଣି ଅଲୋକ ସୁଖ ନ ମଣି
ଗୃହୁଛ ଦୂର ସରଣୀ ନତବଦନେ;
ଜନମ କରୁଛୁ ସଫଳ,
ତୋଠାରୁ ବାନେ ତୋଷି ତୀରବାସୀ ସକଳ ।

ମନ୍ଦାକିନୀ, ଗୋଦାବରୀ    ସେସବୁ ଗୁଣେ ମୋ ସର·
ତଥାପି ବର୍ଦ୍ଧନ କରିଛନ୍ତି ଗୌରବ,
ଲଭି ତୋ ପବିତ୍ର ପଦ—    ତେଣୁ ଅକ୍ଷୟ ସମ୍ପଦ
ଦବଷଦ-ପଦ-ପ୍ରଦ ଅଙ୍ଗ ସୌରଭ;
ତାହା ଥିଲା ମୋର ବାଞ୍ଛିତ,
ତଦର୍ଥରେ ହେଉଥିଲି ମନେ ଲଜ୍ଜିତ ।
କରିଥିଲି ଶୁଭକର୍ମ    ବୋଲି ଆଣି ଦେଲି ଧର୍ମ
ସମୟେ ତୋତେ ମୋ ମର୍ମବାସନା ଜାଣି,
ପାଇଛି ଦୁର୍ଲଭ ଧନ    କରିବ ତୃପ୍ତି ସାଧନ
ନାଥ କରି ସମ୍ବୋଧନ କୋଳକୁ ଆଣି;
ଅଙ୍ଗ ପରିମଳ ତୋହର
ହେବ ମୋର ଜୀବନର କଣ୍ଠ-ହାର ।
ମୋ କୋଳେ କେଳି-ଚପଳ    ସାରସ-ମରାଳଦଳ
କୋକ ଯୁଗଳ ଯୁଗଳ ବକପଙ୍କତି,
ତୋ ପୁଣ୍ୟମୟ ଶରୀର—    କ୍ଷାଳନେ ପୂତ ମୋ ନୀର-
ପାନେ ବଞ୍ଚିଥିବେ ଚିରଦିନ ମୋ କତି;
କଳନାଦ ଛଳେ ତୋ ଯଶ
ଗାଇ ମୋ ଶ୍ରୁତିକି ତୋଷୁଥିବେ ଅଜସ୍ର ।
ପତିବ୍ରତା-ଅଙ୍ଗେ ଲାଗି    ପବିତ୍ର ହେବାର ଲାଗି
ବ୍ରତତୀ ବାସ-ବିରାଗୀ ପ୍ରସୂନମାନ
ଦୂରୁଁ ଦୂରୁଁ ଝାସି ଝାସି    ଧାଇଁଥିବେ ଭାସି ଭାସି
ଭ୍ରମୁଥିବେ ଆସି ଆସି ତୋ ସନ୍ନିଧାନ;
ସ୍ନାନ ସମୟେ ମୋ ପୟରେ
ଦୟାମୟି ! ନ ପେଲିବୁ ତାଙ୍କୁ ପୟରେ

,ମୋ ତୁଳେ ଭୃଙ୍ଗ ଚରଣ କରନ୍ତୁ ମା ବିଚରଣ
ବ୍ୟପଦେଶେ ବିତରଣ ଅମର କାନ୍ତି,
ତା ଲଭି ବନ-ପାଦପ— ସଜ୍ଜ ହୋଇ ଦପ ଦପ
ବନ୍ଦିବେ ଅମର-ଦର୍ପ ବହିବେ ଶାନ୍ତି;
ପଲ୍ଲବେ ପାଟଳ ଶ୍ୟାମଳ
ରୁଚିର ରୁଚି ରହିବ ଚିର ନିର୍ମଳ ।”

* * * *

## ପରିଶ୍ରମ

৺ ଗଙ୍ଗାଧର ମେହେର

ଅବନୀ ଗରଭେ ରହିଛି ପୂରି ପ୍ରଚୁର ଜଳ
ତେତେ ବାହାରିବ ଖୋଳିବ ଯେତେ ପ୍ରକାଶି ବଳ ।

ସେହି ଜଳ ଆଣି ପ୍ଲାବିତ କଲେ ଅବନୀଭିର
ଫଳ ମୂଳ ଶାକ ଅଳପ ବୀଜେ ମିଳେ ପ୍ରଚୁର ।

ପରିଶ୍ରମ କରି ଅଧିକ ଅନ୍ନ ଭୂମିରେ ମିଳି
ବାରମାସ ନିଜ କୁଟୁମ୍ବ ନିଏ ସ୍ୱଚ୍ଛନ୍ଦେ ପାଳି ।

ବନ୍ଧ୍ୟ ଭୂମି ଥାଇ କୃଷକ ହୋଇ ଶ୍ରମବିମୁଖ
ଇନ୍ଦ୍ରେ ଦୋଷ ଦେଇ ସଜଳ ବିନା ଲଭଇ ଦୁଃଖ ।

ଇନ୍ଦ୍ରଦତ୍ତ ଜଳ ଯତନେ ପୁଣି ରଖଇ ନାହିଁ
ଜଳାଭାବ ବେଳେ ସନ୍ତୁଷ୍ଟେ ଥାଏ ଶୂନ୍ୟକୁ ଚାହିଁ ।

ଅଳସ ଲୋକର ପାଶକୁ ନ ପଶଇ ସମ୍ପଦ
ମଧୁ ଅସି ମୁଖେ ନ ପଶେ ଶୋଇଥିଲେ ଷଟ୍‌ପଦ ।

ଦେଶ ଦେଶାନ୍ତର ବିଚରି ପକ୍ଷୀ ପୋଷେ ଉଦର
କ୍ଷୁଧାରେ ମରଇ ଅଳସ ଡେଣି ନ ପାରି ଘର ।

ବାୟା ବିହଙ୍ଗମ କରଇ କେଡ଼େ ସୁନ୍ଦର ବସା
କୁଟୀର ଅଭାବେ ଅଳସ ଭୁଞ୍ଜେ ଘୋର ଦୁର୍ଦ୍ଦଶା ।

ଘାସ ଖାଇ ପଶୁ ସତତ ନରେ ସାହାଯ୍ୟ କରେ
ଓହୋ ! କି ବିଚିତ୍ର ତଥାପି ନର ଅଳସେ ମରେ ।

ନରକୁ ଦଇବ ଜଗତେ ଅଛି କିସ ନ ଦେଇ
ଦ୍ୱାରେ ଦ୍ୱାରେ ବୁଲି ତଥାପି ବୋଲେ ସେ 'ଦେହି ଦେହି'

ନିଜ ନିଜ ପେଟ ପୋଷନ୍ତି କୀଟ ପତଙ୍ଗଗଣ
ପେଟ ପାଇଁ ନର ଭିଖାରି ଧରେ ପର ଚରଣ ।

* * * *

# ଗ୍ରାମ ଖେଳା

## ৺ ନନ୍ଦକିଶୋର ବଳ

ଏହି କଟକ ଜିଲ୍ଲା ଅନ୍ତର୍ଗତ କୃଷ୍ଣପୁର ଗ୍ରାମରେ ୧୮୭୫ ଖ୍ରୀଷ୍ଟାବ୍ଦର ଡିସେମ୍ବର ୨୨ ତାରିଖରେ ଜନ୍ମ-ଗ୍ରହଣ କରିଥିଲେ । ସ୍ୱୀୟ ପ୍ରତିଭା ବଳରେ ସେ ଉଚ୍ଚ ଶିକ୍ଷା ଲାଭ କରି ଶିକ୍ଷା ବିଭାଗର ଜଣେ ପ୍ରଧାନ କର୍ମଚାରୀ ହୋଇଥିଲେ । ପଲ୍ଲୀକବି ନନ୍ଦକିଶୋର ଗଦ୍ୟ ଓ ପଦ୍ୟ ଉଭୟ ସାହିତ୍ୟର ଲେଖକ । କବିତା ମଧ୍ୟରେ ପଲ୍ଲୀଚିତ୍ର, ନିର୍ଝରିଣୀ, ଶର୍ମିଷ୍ଠା ଓ ସୀତାବନବାସ ଏବଂ ଗଦ୍ୟ ଲେଖା ମଧ୍ୟରେ 'କନକଲତା' ପ୍ରଧାନ । ତାଙ୍କର କବିତାଗୁଡ଼ିକ ପଲ୍ଲୀର ଅନାବିଳ ଚିତ୍ରରେ ପୂର୍ଣ୍ଣ ହୋଇ-ଥିବାରୁ ତାହା ପାଠକଙ୍କ ମନରେ ଅପୂର୍ବ ଆନନ୍ଦ ଜାତ କରାଏ । ସେ ୧୯୨୮ ମସିହା ଜୁଲାଇ ପନ୍ଦରରେ ୫୩ ବର୍ଷ ବୟସରେ ପ୍ରାଣତ୍ୟାଗ କରିଥିଲେ ।

ଗ୍ରାମେ କାହିଁ କରି ଲୋକେ ଖେଳା
ମେର ପୋତି ପକାନ୍ତି ବେଙ୍ଗଲା
ବାନ୍ଧି ମଞ୍ଚା ମଧ୍ୟ ସ୍ଥାନେ    ଜଗି କଣାଯୋଗେ ଧାନେ
ମିଛେ ସତେ ଦେଖିଥାନ୍ତି ଯେ ସବୁ ଘଟନା
କଳ୍ପନା ବଳରେ ପ୍ରାତେ କରନ୍ତି ଜଳ୍ପନା । ୧ ।

ନିକଟରେ କ୍ଷୁଦ୍ର ଜଳାଶୟ
ତୋୟ ତାର ଅତି ମଧୁମୟ
ନାନା ଜଳଚରଗଣ    କରୁଥାନ୍ତି ସନ୍ତରଣ
ଟୁଉଁ ଟାଏଁ କେଉଁ କାଏଁ ଅବା କେତେ ସ୍ୱନ
ଶୁଣନ୍ତେ ହୁଅଇ ଆନନ୍ଦିତ ମୋର ମନ । ୨ ।

ପ୍ରତ୍ୟୁଷୁ ଉଠିଣ ଗ୍ରାମବାସୀ
ମେଳ ହୋନ୍ତି ଏକଠାରେ ଆସି

ଖାଏ ପିକା କେହୁ ବସି ଗଳ୍ପ କରେ କେହୁ ହସି
ମୁହମୁହୁ ଛିଙ୍କି କରେ କେ ନସ୍ୟ ଗ୍ରହଣ
ଢଳଟାରେ ବସି କରେ କେ ଦନ୍ତ ଧାପନ । ୩ ।

କ୍ଷୌର କର୍ମେ ନାପିତ ପ୍ରବର
ବସି କହେ ବିଲ୍ଲତ ଖବର

ଧର୍ମ ଶାସ୍ତ୍ରେ ସାମରଥା ବୃଦ୍ଧ କହେ ଧର୍ମକଥା
କେହୁ ଗୃହକଥା, କେହୁ ବଲର ସମ୍ବାଦ
ଅନର୍ଥକ ବିଷୟେ କେ କରନ୍ତି ବିବାଦ । ୪ ।

ବିଲ୍ଲ କଣ୍ଟା ହୋଇ ଅଧା ଅଧା
ପ୍ରଶସ୍ତ ଖଳାରେ ଧାନଗଦା

ହୋଇଅଛି ଉଦା ଉଦା କୃଷକର ଘୋର ଧନ୍ଦା
ସାହୁ ମହାଜନ ଶୁଣି କୁଟୁମ୍ବ ପାଳିବ
ସେହୁ ଧାନ ବିକ ପୁଣି ରାଜସ୍ୱ ଗଣିବ । ୫ ।

ଅସ୍ଥିର ଏ ଉବର ବେଭାର
କିଛି ଚିର ନ ରହେ କାହାର

ଆଜ ଯେ ମୂଲିଆ ଧାଙ୍ଗି କାଲି ସେ ବାଟ ଭିକାରି
କାଲୁ ଭୁଲ କୃଷକ ରେ । ଚିରକାଳ ରହୁ
ସ୍ୱବୁଦ୍ଧି-ଦାନେ ପାନ୍ତ ଏ ବିଶାଳ ମହୀ । ୬ ।

ବ୍ରାହ୍ମଣ ସନ୍ନ୍ୟାସୀ ଧନୀ ମାନୀ
ହେଲେହେଁ ସେ ଅନ୍ନଅଭିମାନୀ

ହେଲେହେଁ ତୁ ଅଢ ଘାନ ନୋହୁ ତାଙ୍କଠାରୁ ସାନ
ବୈଶାଖର ଖରା ପୁଣି ଶ୍ରାବଣର ଧାରା
ମାଘ ମାସ ଶୀତ ସହୁ ଖଟୁ ବର୍ଷସାରା । ୭ ।

ହେ କୃଷକ ! ଅଶେଷ କଷଣ
ସହୁ ଅର୍ଜୁ ତୁ ଅଳପ ଧନ
ଅକର୍ମି ଅଳସ ଜନେ ଶୋଷନ୍ତି କଷ୍ଟୁର ମନେ
ଭଣ୍ଡୁକ ବ୍ରାହ୍ମଣ ଯୋଗୀ ବୈଷ୍ଣବ ରୂପରେ
ଭଣ୍ଡାଳିଆ ପ୍ରବଞ୍ଚକ ଅନନ୍ତ ସେ ନରେ । ୮ ।

କର୍ମକୁଣ୍ଠ ଅଳସେ ତୋ ଧନ
ଦେଇ ପାପ ନ କର ଅର୍ଜନ
ଅଛନ୍ତି ସକଳେ ହର ଦେହ ମନ ଦାନ କର
ସୁସ୍ଥ ଦେହେଁ ବସି ଧର୍ମ ଲୁଣ୍ଠନେ କାହାର
ଆଚଣ୍ଡାଳ ବ୍ରାହ୍ମଣରେ ନାହିଁ ଅଧିକାର । ୯ ।

କିନ୍ତୁ ଘାନ ଅସମର୍ଥ ଜନେ
ଅନାଥ ତୁ କୃପାର ନୟନେ
ହେଲେହେଁ ବିପ୍ର ଚଣ୍ଡାଳ ନ ବିଚାର ଦେଶ କାଳ
ସାଧ୍ୟ ଅନୁଯାୟୀ ଦୁଃଖ କର ତା ମୋଚନ
ଧନ୍ୟ ସେ ପରାର୍ଥେ ପ୍ରାଣ କରଇ ଧାରଣ । ୧୦ ।

କର୍ମ କର କର୍ମ କର ଭାଇ
କର୍ମଠାରୁ ପୁଣ୍ୟ ଆଉ ନାହିଁ
ସାଧୁକର୍ମଲବ୍ଧ ଧନେ ଅନାଦେ ପାପ ଜୀବନେ
ଶକ୍ତି ଅନୁସାରେ ଦିଅ ଦୁଃଖିଭିକ୍ଷାପାତ୍ରେ
ଉଦ୍‌ବୃତ୍ତ ଅର୍ଥ ସଞ୍ଚୟ କର ବିପଦାର୍ଥେ । ୧୧ ।

କୃଷି ଲବ୍ଧ ଶସ୍ୟ ବଳା କଣା
କଲେ ଧନ ବୃଦ୍ଧି ଏଥୁ ସିନା
ବାଣିଜ୍ୟେ ଷୋଳଣା ଧନ    କୃଷିକାର୍ଯ୍ୟେ ଅଠପଣ
ରାଜକର୍ମେ ଗୁରୁପଣ, ଭିକ୍ଷା ନୁଖି ଛାର
ଧିକ ତା ଜୀବନ ଭିକ୍ଷା ଜୀବକା ଯାହାର । ୧୨ ।

ଧନ୍ୟ ଧନ୍ୟ କୃଷକ ରେ ! ତୋତେ
ଖଟି ଖଟି ପୋଷୁ ଅଛୁ ମୋତେ
ହେସ୍ତୁ ତୋତେ ମଣେ ଯେତୁ    ଅବଶ୍ୟ କର୍ମନ ସେତୁ
ତାର ଗର୍ବେ ସଂସାରର କ ଲାଭ ହୋଇବ
ତୋ ବନ୍ଧୁନେ ଏ ସଂସାର କ୍ଷଣେ ନାଶଯିବ । ୧୩ ।

## ବର୍ଷା-ମଙ୍ଗଳ

୬ ନନ୍ଦକିଶୋର ବଳ

ନସ୍ଯୃଢ ନଗୁଡ଼    ନଦେଖେ ନଦାଘ
ବ୍ରସନ୍ତି ଗଲ ଏ ଧର
ଅଦୃଶ୍ୟ ଭୁବରେ    କେଜଣେ ଲୁଚିଲ ସେ
ନଦାଘ ନସ୍ଥ ଖର ।
ହିଦବ ଧାମରୁ    ଓହ୍ଲାଇ ପ୍ରାବୃଟ
ବେଢ଼ିଲ୍ଲ ନଭଭବନ
ଘୋର ରଣେ ହାର    ଗଗନ ବଢ଼ଜ
ଭୟେ ଲୁଚିଲେ ତପନ ।

ଦାରୁଣ ନଦାଘ— ତାପେ ବସୁନ୍ଧରା
ଥିଲ ମୃତକଳ୍ପା ହୋଇ
ଅଦୃଶ୍ୟ ନିଦେଶୁଁ ବାହୁଡ଼ ପ୍ରାବୃଟ
ଦେଲ ତପ୍ତ ତନୁ ଧୋଇ ।
ସଞ୍ଜୀବନୀ-ମନ୍ତ୍ର ପଢ଼ି ସୁଧା ବର୍ଷେ
ସ୍ୱର୍ଗଦୂତ ନୀରଧର
କି ଅହ୍ଲାଦେ ପିଏ ସେ ସୁଧା ବସୁଧା
ସଞ୍ଚାଳି ବିଟପି-କର ।
ପ୍ରସୁନ ମଳୟ ରକ୍ତ କିଶଳୟ
ଗହଣେ ଅମ୍ବଇ ମଧୁ
ସହକାର କୁଞ୍ଜେ ପିକବର ସଙ୍ଗେ
କୁହରଇ ପିକ-ବଧୂ ।
ଶାରଦ ଅକାଶେ ବିମଳ ଚନ୍ଦ୍ରିକା
ଅହା କିବା ମନୋଲୋଭା
ଉତ୍‌କ୍ଷିପ୍ତ ପବନେ ଉନ୍ମତ୍ତ ଅହ୍ଲାଦେ
ପିଏଁ ମୁଁ ସେ ଗୃରୁ ଶୋଭା ।
ସୁଖର ବସନ୍ତ ଶରଦ ହେ ବର୍ଷା
ସୁଖୀ ପାଇଁ ସେହୁ ଶୋଭା
ବିଷାଦ-ଜନନୀ ତୋହର ମୂରତି
ଦୁଃଖି-ଦଗ୍ଧ-ମନୋଲୋଭା ।
ସୁଗମ୍ଭୀର ମନ୍ତ୍ରେ କି ବିଷାଦ-ଗୀତ
ଗାଅ ହେ ପ୍ରାବୃଟ ନବ !
ଅନନ୍ତ ପ୍ରଣବ ଗମ୍ଭୀର ଝଙ୍କାରେ
ରଟେ ତବ ସାନ୍ଦ୍ର ରବ ।

ନବ ପ୍ରାବୃଟର ପୃଷତରେ ଅର୍ଦ୍ର
କ୍ଷିତିର ସୁରଭି ଗନ୍ଧ
ବହୁଣ ବହଇ ମନ-ବିନୋଦନ
ଗନ୍ଧବହ ମନ୍ଦ ମନ୍ଦ ।
ସେ ରଜ ସୁବାସ ବିଞ୍ଚରଇ ବାଣ୍ଟି
ଭ୍ରମି ଭ୍ରମି ଦଶେ ଦଶେ
ନୀରଦ-ରାଜାଙ୍କୁ ଧରଣୀ-ରାଣୀର
ଅର୍ଘ୍ୟ ଧୂପ ଗନ୍ଧ କି ସେ !
ନୀରରେଖାବନ୍ଧ ଶୁଷ୍କରଜବୃନ୍ଦ
ଯାଉଅଛି ଉଡ଼ି ଉଡ଼ି
ସେ ରଜସ୍ପର୍ଶେ କିବା ଶୋଭିବନ
ଦଶଇଁ ପାଣିବେନ୍ଦୁଡ଼ି ।
ନବ ନୀରଧର— ନୀରସ୍ନାନେ ବ୍ୟସ୍ତ
ଶାଖାଗଣ ହଲି ହଲି
'ସ୍ୱାଗତ ହେ ବର୍ଷା !' ବୋଲଣ କର କି
ସମ୍ଭାଳନ୍ତି ଦ୍ରୁମାବଳୀ ?
ଝିପି ଝିପି ପଡ଼େ ବରଷାର ନୀର
ସୁଲୁ ସୁଲୁ ବହେ ବାୟୁ
'କାଆଁ-କାଆଁ' ବସି ରାବ ଦେଉଅଛି
ବନସ୍ପତି ଡାଳେ କାଉ ।
ବଣ ଉପବନୁ ଡାକଇଁ ଡାହୁକ
ଦର୍ଦ୍ଦୁର-ରବେ ସେ ମିଶି
କୁମ୍ଭାଟୁଆ ଡାକ— ସହ ସେ ଶବଦ
ସଞ୍ଚରଇ ଦିଶି ଦିଶି ।

ଘନ କୃଷ୍ଣ ନଭେ ନବ ନୀରଦର
ଦର୍ଶନେ ନୃତ୍ୟ-ଉତ୍ସବେ
ବନ ପର୍ବତରେ ମୟୂର ମୟୂରୀ
ଡାକନ୍ତି ଷଡ଼ଜରବେ ।
କଳ କଳ ନାଦେ ବହେ ସ୍ରୋତସ୍ୱିନୀ
ବର୍ଷେ ପଡ଼େ ଧାର ବାର
ପାହାଡ଼ିଆ ବଗ ଛାଡ଼ ନାଉରିଆ
କରୁଛ ପହଁାର ପାର ।
ନିଦାଘ ତପ୍ତକୁ ଘଉଡ଼ାଇ ଘନ
ଶ୍ୱବାହ କରେ କି ରଙ୍ଗେ
ଲକ୍ଷ୍ମୀଦେବୀଙ୍କର ପ୍ରଭୁବ ଉଦ୍ଦେଶ୍ୟ
ଧରଣୀ-ରମଣୀ ସଙ୍ଗେ ।
ବର୍ଷା ଋତୁରେ ବରଷେ ଅସାର
ପୂରଇ ବଳ ପୋଷଣ
ଘର ଅନ୍ତରଣେ ବସନ୍ତ କମଳା
ଶ୍ୟାମଳ ମୂରତି ଧରି ।
ନଭେ କାଦମ୍ବିନୀ— ବୋଲେ ଇରମ୍ମଦ
ହେମପ୍ରଭା ଭଣି ଦଣେ
ଛ୍ରଦକ ଦେବତା ସୁନାସୀରଙ୍କର
କନକ କାର୍ମୁକ କି ସେ ?
ବ୍ରହ୍ମାଣ୍ଡମଣ୍ଡଳ କମ୍ପାଇ ଦେଉଛି
ବଜ୍ର ମନ୍ତ୍ର ଘଡ଼ଘଡ଼
ଦିଗ୍‌ବଳୟ ପାରେ ମିଳାଇ ଯାଉଛି
ତଉଦଗ ରଡ଼ମଡ଼ ।

ଦୂର ବନସ୍ଥଳୀ ଡାକ ଦେଉଅଛୁ
ଘନଘୋଷେ "ଘୋର୍ଓ-ଘୋର୍ଓ"
କି ବଚନ ସାଜେ ସାଜନ୍ତୁ ପ୍ରକୃତ
ଫେଡ଼ ନେଜ ଗୃହ୍ମାଁ ହୋର୍ଓ ।
ଗିରି ଗହ୍ୱନରେ ଝିଁଉଭ ନର୍ଝର
ଝର୍ଝର ଶୁଭଇ ଧ୍ୱନି
ଗମ୍ଭୀର ଗହ୍ୱରେ ଗିରିକନ୍ଦରରେ
ଶୁଭେ ଘୋର ପ୍ରତିଧ୍ୱନି ।
ରବି ପ୍ରତିମୁଖେ ଦିଶେ ଇନ୍ଦ୍ରଧନୁ
ବର୍ଣ୍ଣଚ୍ଛଟା ରମ୍ୟ ଚକ୍ଷୁ
ଶତ ଇନ୍ଦ୍ରଧନୁ ଝଲସି ଉଠଇ
ଚଳ ନିର୍ଝରର ବକ୍ଷୁଁ ।
ଫେଡ଼ ସୁରବାଳା ଇନ୍ଦ୍ରଜାଲ ଦ୍ୱାର-
ଯୁକ୍ତ ସୁବର୍ଣ୍ଣତୋରଣ
ଅର୍ଦ୍ଧ ବାରିଦର ବଚନ ଅନ୍ତର
ସ୍ୱର୍ଗଁ କରନ୍ତି ଦର୍ଶନ ।

# ରେଲ ଉପରେ ଚିଲ୍‌କାଦର୍ଶନ

✓ ଗୋପବନ୍ଧୁ ଦାଶ

( ନଟବାଣୀ ବୃତ୍ତ )

ଉତ୍କଳମଣି ଗୋପବନ୍ଧୁ ପୁରୀଜିଲ୍ଲାର ସତ୍ୟବାଦୀ ଥାନା ଅନ୍ତର୍ଗତ ସୁଆଣ୍ଡ ଗ୍ରାମରେ ୧୮୭୭ ମସିହାରେ ଜନ୍ମଗ୍ରହଣ କରିଥିଲେ । ସେ ଯୋଗ୍ୟତାର ସହିତ ରେଭେନ୍‌ସା କଲେଜରୁ ବି. ଏ. ପାଶ କରି ୧୯୦୬ ମସିହାରେ କଲିକତା କଲେଜରୁ ଓକିଲାତି ପାଶ କରିଥିଲେ ।

ତାଙ୍କ ଯତ୍ନରେ ୧୯୦୯ ମସିହାରେ ସତ୍ୟବାଦୀ ସ୍କୁଲ ସ୍ଥାପିତ ହୋଇଥିଲା ଏବଂ 'ସମାଜ' ନାମକ ସମ୍ବାଦପତ୍ର ଓ 'ସତ୍ୟବାଦୀ' ନାମକ ମାସିକ ପତ୍ରିକା ପ୍ରକାଶିତ ହୋଇଥିଲା । ଅସହଯୋଗ ଆନ୍ଦୋଳନ ଫଳରେ ସେ କାରାଗାରରେ ଥିବାବେଳେ ବନ୍ଦୀର ଆତ୍ମକଥା, ଧର୍ମପଦ, ଗୋମାହାତ୍ମ୍ୟ, ନଚିକେତା, କାରାକବିତା, ଅବକାଶଚିନ୍ତା ପ୍ରଭୃତି କେତେକ ଉପାଦେୟ ଓ ଭାବପୂର୍ଣ୍ଣ କବିତାପୁସ୍ତକ ରଚନା କରିଥିଲେ । ଗୋପବନ୍ଧୁ ଏକାଧାରରେ ସୁକବି, ସୁବକ୍ତା, ଭାବୁକ, ସ୍ୱଦେଶପ୍ରେମିକ, କର୍ମବୀର ଓ ତ୍ୟାଗବୀର ଥିଲେ । ଏହି ମହାମାନବ ୧୯୨୮ ମସିହା ଜୁନ ମାସ ୧୭ ତାରିଖରେ ଇହଲୀଳା ସାଙ୍ଗ କରିଥିଲେ ।

ରହ ରହ କ୍ଷଣେ ବାଷ୍ପୀୟ ଶକଟ,
ଦେଖିବ ଚଳକା ଗୃହୁ ଚଉପଟ ।
ଚନ୍ଦ୍ର ମଣ୍ଡଳେ ଯେଣୁ ନାହିଁ ଅନୁଭବ
ବାସ୍ତବ ବଙ୍ଗେ କି ଏ ଛବ ସମ୍ଭବ ?
ନୀଳ ବୀଚମାଳା ଧୀରେ ଧୀରେ ଯାଏ
ଲାଗଇ ସ୍ୱପନେ ଦେଖିଲା ପରାଏ ।
ସନ୍ତରନ୍ତ ବକ୍ଷେ ପକ୍ଷୀ ଦଳ ଦଳ
ଓଲଟିଣ ତଳେ ଦଶନ୍ତ ଯୁଗଳ,
ଘୋରନାଦେ ପହୁଁ ଉଠିଲେ ସେ ନଭେ
ଉଠେ ଶତ ଖଗ ଚଳକା ଗରଭେ ।
ସତ୍ୟ ବୋଲି ମନେ ନ ହେଉଁ ପ୍ରତୀତ
ପଲକେ ସେ ଦୃଶ୍ୟ ହୁଏ ତିରୋହିତ ।
ଦୂରେ ଘେନିଯାଏ ନଦାରୁଣ ଯାନ
ଆସେ ପୁଣି ତରୁ ଶିଳା ବ୍ୟବଧାନ ।
କମିତେ ଲୁଚ୍ଛଏ କମିତେ ଦେଖାଏ
ସ୍ୱପ୍ନଲବ୍ଧ ପ୍ରିୟସୁଷମା ପରାଏ ।
କାହିଁ ଦଣେ ନୀଳ କାହିଁ ସୁଶ୍ୟାମଳ
କାହିଁ 'ବା ଧୂସର କାହିଁ ବା ଧବଳ ।
ନାନା ସ୍ଥାନେ ନାନା ରଙ୍ଗେ ଫର୍ଦ କାୟା
ପ୍ରକାଶି ଚଳକା । କରୁ କେତେ ମାୟା ।
ଦେବୀ ବୀଣାପାଣି ଶାଶ୍ୱତ ସେବକ
କବି ରାଧାନାଥ ସୁଷମା-ଗ୍ରାହକ,
ଭ୍ରମି ବହୁ ସ୍ଥାନ କଶାଳ ଭାରତେ
ନଦ ନଦୀ ମରୁ କାନନ ପର୍ବତେ,

ଦେଖିଲେ ପ୍ରକୃତି ବିବିଧ ପ୍ରକାଶ
କିନ୍ତୁ ଶୋଭିଲିବୁ ଶୁଦ୍ଧ ଅଭିଳାଷ
ସୁଖ ଶାନ୍ତି ପ୍ରୀତି କାହିଁ ଏକାଧାରେ
ନ ପାଇଲେ, ଯଥା ମିଳେ ତୋହଠାରେ ।
ଉତ୍କଳର ତୁହି ସୌନ୍ଦର୍ଯ୍ୟର ଖଣି,
ସାରସ୍ୱତ ନେନେ ବାଛି ତହୁଁ ମଣି
ସୁଦକ୍ଷ ବିନାଣି ରଚି ଯେଉଁ ହାର
ଅର୍ପିଲେ ଉତ୍କଳ-ଭାରତୀ-ଗଳାର,
ଚିରଦିନ ତାହା ସୃଜିବ ରୁଚିର
ତା ଦେଖି ଭାବୁକେ ଲୋଡ଼ିବେ ତୋ ଗୀର ।
ମୁଁ ଅଧମ ମୋର ଭାବୁକତା ନାହିଁ,
ତଥାପି ଏ ପ୍ରାଣ କେ ଜାଣେ କିପାଇଁ
ନିରନ୍ତର ଲୋଡ଼େ ସୌନ୍ଦର୍ଯ୍ୟ ବ୍ୟାକୁଳେ,
ତେଣୁ ଭାବିଥିଲି ଆସି ତୋର କୂଳେ
ଦେଖିବି ତୋ ଶୋଭା ଦିନେ ନିକାଞ୍ଚନେ,
କର୍ମବନ୍ଧେ ଥିଲି ମନକଥା ମନେ ।
ଏତେ କାଳ ଅନ୍ତେ ପଡ଼ିଥିଲା ଯୋଗ
ଅହା ସେ ସୁଯୋଗ ହେଲା ନାହିଁ ଭୋଗ
ରହିଣ ଜଞ୍ଜାଳ ବିଷମ ଜଗତେ
ହସାଖି ସୋଦର ବାନ୍ଧବ ସଙ୍ଗତେ ।
ଇଚ୍ଛାମତେ କାହିଁ ଚଳିବ ବା ଜନ
ସମାଜେ ନିଜର ନୁହେଁ ନିଜ ମନ ।
ବସି କେତେ ଥର ନୀରବ ବିଜନେ
ଦେଖିଛି ତୋ ରୂପ କଳ୍ପନା-ନୟନେ ।

ତୋ ନୀଳ ତରଙ୍ଗେ ଖେଳେ ନିରନ୍ତର
ଅନୁପମ ଦିବ୍ୟ ହିରଣ୍ମୟ ସ୍ୱର ।
ଗୃହୁ ଶବ୍ଦରୂପ ତୋର ବକ୍ଷସ୍ଥଳେ
ନାଚେ ଶତ ଶତ ମୋ କଳ୍ପନା ବଁଳେ ।
କଳ୍ପନା-ରଚିତ ତୋ ସୁନ୍ଦର ତନୁ
କାଳେ କାଳେ ଅଭ୍ ନ ଯିବ ମୋ ମନୁଁ
ଅଜ ଲେ ଶଲ୍ଲକା । କଳ୍ପନା ପ୍ରଭାବେ
ପୂରଇ ମୋ ମନ ଅହା କେତେ ଭାବେ ।
ଅତୀତର ସୁଖସ୍ମୃତିସମୃତିସ୍ତୁ
ହର୍ଷ-ଖେଦେ କରେ ଅକୁଳ ହୃଦୟ ।
ତୋ ମଧୁର ନାମେ ରହିଛି ଜଡ଼ିତ
ଗଉରବଯୁତ ଉତ୍କଳ ଅତୀତ ।
କାହିଁ ଉତ୍କଳର ସେ ସୁକୃତରାଶି,
ଯାହାର ପ୍ରଭାବେ ପ୍ରଭୁ ବ୍ରହ୍ମରାଶି
ନିଜେ ନିରଞ୍ଜନ ଜଗତଈଶ୍ୱର
ଧରଣ ସୈନିକ ନର କଳେବର,
ଉତ୍କଳର ଯଶଃ ପ୍ରତିଷ୍ଠା ରକ୍ଷଣେ
ବିଜେକଲେ ଘୋର ସମରପ୍ରାଙ୍ଗଣେ ।
କାହିଁ ସେ ସୌଭାଗ୍ୟ କାହିଁ ସେ ସୁକୃତ
ପବିତ୍ର ଉତ୍କଳ ଅହା କି ବିକୃତ !
ଆର୍ଯ୍ୟ ଧର୍ମକ୍ଷେତ୍ର ପୂତ ନୀଳାଚଳ
ହରାଇଛି ସବୁ କର୍ମ ଧର୍ମବଳ ।
ନାହିଁ ମୁଖେ ତେଣୁ ପୂର୍ବ ପୁଣ୍ୟକାନ୍ତି
ହୃଦୟେ ସ୍ୱର୍ଗୀୟ ଧର୍ମଜାତ ଶାନ୍ତି

ଜୀବନେ ପବନ ଉତ୍ସାହ ଶକତି
ଉତ୍କଳର ଅହା କି ଘୋର ଦୁର୍ଗତି ।
କାହିଁ ଗଲ ପୂର୍ବ ଓଡ଼ିଆ ବୋଇତ
କାହିଁ ସେ ନାବିକ ଉଦ୍ଦାମ ସଙ୍ଗୀତ ?
ଜଳପଥେ କାହିଁ ବିଦେଶ ଗମନ
କାହିଁ ପୂର୍ବ ଖ୍ୟାତି କାହିଁ ପୂର୍ବ ଧନ ?
କଥାରେ ରହିଛି ସବୁ ଆଜିଯାଏ
ସାଧବାଣୀ ବୋହୂ ବୋଇତ ବନ୍ଦାଏ ।
ଝଙ୍କରିତ ତୋର ଦୃଢ଼ ରମ୍ୟ ତଟ
ଦୁର୍ଗମ ଶଇଳ ଅଭେଦ୍ୟ ସଙ୍କଟ,
ଖେଳାଉଥିଲେ ଯେ ଧରି ନୃଙ୍ଗି ଦେହେ
ଉତ୍କଳର କେତେ ବୀର ଶିଶୁ ସ୍ନେହେ ।
ଅଛି ସେହି ଗିରି, ଅଛି ସେ ବିପିନ
ଅଛି ତୋର ଶିଳାସ୍ତୁଦୃଢ଼ ପୁଳିନ
କିନ୍ତୁ କାହିଁ ଅହା ଏବେ ସେ ବୀରତା
ଓଡ଼ିଆ ଜାତିର ପୂର୍ବ ଜାତୀୟତା ?

# ଉପେନ୍ଦ୍ର ଭଞ୍ଜ

୰ ଗୋପବନ୍ଧୁ ଦାଶ

କବିକୁଳକଞ୍ଜ ଉପେନ୍ଦ୍ର ଭଞ୍ଜ
ନମେ ତବ ପଦତଳେ
କାବ୍ୟ-ସୁମାଧୁରୀ ଭାଷା-ସୁଚାତୁରୀ
ପରକାଶିଲ ଉତ୍କଳେ ।

ଜନ୍ମି ରାଜକୁଳେ ବଇଭବ-କୋଳେ
ଅତୁଳ ସୁଖ-ସଦନେ
ତେଜି ସେ ସମ୍ଭୋଗ ଆଚରିଲ ଯୋଗ
ବୀଣାପାଣି-ଅରାଧନେ ।

ଅତି ମନୋହର ସୃଷ୍ଟି ଚମତ୍କାର
ଶତ ମାନସୀ ପ୍ରତିମା
କାବ୍ୟ ଚିତ୍ରପଟେ ଉଜ୍ଜ୍ୱଳେ ପ୍ରକଟେ
ତୁମ୍ଭ ପ୍ରତିଭା ଗରିମା ।

କଳ୍ପନାର କାଟେ ତବ ହୃଦ-ଛାଞ୍ଚେ
ନବ ବର୍ଣ୍ଣେ ପ୍ରତିଫଳ
ନବ ଅଳଙ୍କାରେ ଶୋଭେ କି ରୁଚିରେ
ପୁରାଣ ଘଟଣାବଳି !

ହେ କବିଶେଖର ଭଞ୍ଜ ବୀରବର !
କୋଟି ଉତ୍କଳ ସନ୍ତାନେ
ଆଜ ନବ ଯୁଗେ ଧନ୍ୟଧନ୍ୟବାଦ
କରୁଛନ୍ତି ତୁମ୍ଭ ନାମେ ।

ଗାଏ ଛନ୍ଦ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା
ବଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।

ଢାଲ ବଇଅର ଅଣଇ ସମ୍ଭାର
ନବ ରୁଚି ନବ ଛନ୍ଦ
କନ୍ତୁ "ବୈଦେହୀଶ— ବିଳାସ" ପାଇବ
କାଳେ କାଳେ ଉଚ୍ଚ ସ୍ଥାନ ।

ସୃଜିଣ ସ୍ୱହସ୍ତେ ଓଡ଼ିଆଙ୍କ ଭାଷା
ଗଢ଼ିଛ ଓଡ଼ିଆ ଜାତି
ତବ ଜନ୍ମସ୍ଥାନ ଓଡ଼ିଶାରୁ ଆନ
ଭାବିଲେ ବଦରେ ଛତି ।

ତଥାପି ଅନେକ ସାହିତ୍ୟ-ସେବକ
ଭବ-ଜଙ୍ଗଲ-ନନ୍ଦନ
ପୁଣ୍ୟ ତୀର୍ଥ ମଣି ଧୂମୁସର-ପଦେ
କରିବେ ନତ ବନ୍ଦନ ।

# ବାଣୀ ଆବାହନ

## ୪ ଚିନ୍ତାମଣି ମହାନ୍ତି

### ( ସ୍ୱର—ଜ୍ୟେଷ୍ଠ )

କବିବର ଢ଼ଦ୍ରଖ ସବ୍‌ଡ଼ିଭିଜନ ଅନ୍ତର୍ଗତ କୁଳମୂଳାଇ ଗ୍ରାମରେ ୧୮୬୭ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପ୍ରତିଭା ଅତି ଯୌବନାବସ୍ଥାରୁ ବିକଶିତ ହୋଇଥିଲା । କବି ତାହାଙ୍କର ଜୀବନକାଳ ମଧ୍ୟରେ ଉତ୍କଳ ଓ ଗଞ୍ଜାମର ନାନା ସ୍ଥାନରେ ଭ୍ରମଣ କରିଥିଲେ ଏବଂ ନାନା ପତ୍ରପତ୍ରିକାର ସମ୍ପାଦକତ୍ୱ ମଧ୍ୟ ଗ୍ରହଣ କରିଥିଲେ । ଉତ୍କଳସାହିତ୍ୟ-ଭଣ୍ଡାରକୁ କବିଙ୍କର ଦାନ ଅପରିସୀମ । ସେ ପୌରାଣିକ, ଐତିହାସିକ, କାଳ୍ପନିକ, ରାଜଭକ୍ତି, ଲୋକଚରିତ, ଧର୍ମ, ସଂସ୍କାର ପ୍ରଭୃତି ନାନା ବିଷୟରେ ଅନ୍ୟୂନ ୫୮ ଖଣ୍ଡ କାବ୍ୟ ଏବଂ ଉପନ୍ୟାସ, ଗଳ୍ପ ପ୍ରଭୃତି ପ୍ରାୟ ୩୦ ଖଣ୍ଡ ଗଦ୍ୟ ଗ୍ରନ୍ଥ ରଚନା କରିଥିଲେ । ସେ ସମସ୍ତ ବର୍ତ୍ତିମାନ 'ଚିନ୍ତାମଣିଗ୍ରନ୍ଥାବଳୀ' ନାମରେ ପ୍ରକାଶିତ ହୋଇଅଛି । କବିବର ୧୯୪୩ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ମାନବଲୀଳା ସଂବରଣ କଲେ ।

ଅୟି ବାଣି ବୀଣାପାଣି ଗୀତ-ବାଣୀ-ବର୍ଣ୍ଣରଣି
କାବ୍ୟକଳାଠାକୁରାଣି କବଜନନୀ !
ତବ ଆରାଧନା ପାଇଁ ଆଶାବୋଳା ନେଇ ଗୁହି-
ଅଛନ୍ତି ବାସନ୍ତୀଲକ୍ଷ୍ମୀ ଫୁଲବରଣୀ
ହର୍ଷେ ଜଗ୍ଭ ବନସୁନ୍ଦରୀ
ଗୁରୁ ଫୁଲ ସିଂହାସନ ବକ୍ଷରେ ଧରି । ୧ ।
ମଳୟ ମାରୁତ କରେ ଧରି ପଲ୍ଲବ-ଚାମରେ
ଅଛି ତବ ଅପେକ୍ଷାରେ ଖଞ୍ଜଣୀ ଆଣେ
ଫୁଙ୍କେ ଶୁଭଶଙ୍ଖ ଅଳି ମହାଭାବେ ତଳି ତଳି
ଗାଏ ପିକ 'ଆଗମନୀ' କୁଞ୍ଜ-ଆବାସେ
ଟେକି ଚୁତ ପଣ୍ଡିତପୁଷ୍ପ
ଟେକିଅଛି ଭେଟିବାକୁ ସ୍ୱର୍ଣ୍ଣମୁକୁଟ । ୨ ।
ଅୟି ଦେହେ ଅୟି ପ୍ରାଣେ ଅୟି ମା ଅନ୍ତରେ ଧ୍ୟାନେ
ମଙ୍ଗଳ ଆକାଙ୍କ୍ଷା ହୃଦେ ଆଣ ସତ୍ୱର
ଦିଅ ସାଧନାରେ ବଳ ଉତ୍ସାହ ଶକ୍ତି ପ୍ରବଳ
କର ଆତ୍ମା ସୁନିର୍ମଳ ସତ୍ୟ ସୁନ୍ଦର
ପଦସେବା ଯୋଗ୍ୟତା ତବ
ପ୍ରଦାନ ଗୋ ଦେବି ! ଭାଗ୍ୟେ ପୁଣ୍ୟ ବିଭବ । ୩ ।
ଆଶୀର୍ବାଦ-ଜ୍ୟୋତିକାଳେ ଧୂଅ ଉଜ୍ଜଳ-କପାଳେ
ମହିମା-ମୟୂଖେ ଉଠୁ ହସି ସେ ଖରେ
ସ୍ୱର୍ଣ୍ଣମସୀ ଲେଖାଣୀରେ ଲେଖିଦିଅ ତାହା ଶିରେ
"ନବ ଉତ୍କଳିନୀ" ବୋଲି ସଫଳାକ୍ଷରେ
ଯେବେ ତାର ଭକ୍ତ-ଅରତ୍ତ
ଗଭୀର ଗୋପନ ବ୍ୟଥା ହରିଭାରତ ! ୪ ।

# ବିରହ ବ୍ୟଥା

ଶ୍ରୀମତୀ ଅପର୍ଣ୍ଣା ଦେବୀ

ମଣିଛି ମାନସେ ଏ ଅଖିଳ ବିଶ୍ୱେ
ତମରି ବିରହ ସିକ୍ତେ ହେ
ତମରି ବିରହ— ବଂଶୀ ଅହରହ
ହୃଦୟ ବିଦାରି ବାଜେ ହେ
କଣୀଥିଲି ବକ୍ଷେ ତାପ ସ୍ପରହାରେ
ବାସର ବିମଳ ଅଲୋକ ପ୍ରସ୍ତରେ
ତରଳତରଙ୍ଗାକୁଳ ପାରିବାରେ ସେ ବିରହବ୍ୟଥା ବାଜେ ହେ ।
ବସୁମତୀ-ବୁକେ ବ୍ୟଥାର ଅତଙ୍କେ
ବାଜି ଉଠେ-ସ୍ୱରେ ସ୍ୱରେ ହେ
କଲ୍ଲୋଳନୀ-କୋଳେ କୋମଳ କଲ୍ଲୋଳେ
ଲୋଳ କଳ କଳ ସ୍ୱରେ ହେ
ଗିରିଦରୀ ଭେଦ ନିର୍ଝର ଝର୍ଝରେ
ପତତ୍ରିନିସ୍ୱନେ, ପଲ୍ଲବମର୍ମରେ
ଦହୁ ବନବୀଥୀବକ୍ଷ କର୍ମମରେ ବନାଗ୍ନି ରୂପେ ବିସିଜେ ହେ ।
ଶିଶିର ସମ୍ପାରେ ବରଷାର ଧାରେ
ନିଦାଘର ରୁକ୍ଷ ତାନେ ହେ
ବସନ୍ତ ଅନ୍ତରେ ବାଜେ ପୁରେ ପୁରେ
ଉଦାସେ କନ୍ଦାଇ ପ୍ରାଣେ ହେ
କାହିଁ ଅଛ ଅସ ହେ ପରାଣଦେବ !
ବାଜି ଉଠୁ ଶୁଭ ଅଗମନୀ ତବ
ମିଳନଶଙ୍ଖର ମଙ୍ଗଳ ଆରବ ଧ୍ୱନି ଏ ଜୀବନକୁଞ୍ଜେ ହେ ।

# ତାଜମହଲ କବି

ଶ୍ରୀ ନାରାୟଣମୋହନ ଦେ, ଏମ୍. ଏ.

ହେ ସମ୍ରାଟ କବି  ହେ ଶିଳ୍ପିଶେଖର
ହେ ପ୍ରେମିକଶିରୋମଣି !
କି ନାମେ ଡାକିବି  କି ଭାଷାରେ ଅବା
ବର୍ଣ୍ଣିବି ତବ କରଣୀ ?
ଭାରତର ମୁଖ  ସମୁଜ୍ଜ୍ୱଳ ସିନା
ତବ ଏ କୀରତି ପାଇଁ
ଅଦ୍ୟାପି ଦେଖିବୁ  ଭାରତର ଟେକ
ଉର୍ଦ୍ଧ୍ୱେ ଟିକି ନରସାଇଁ !
ତବ ଅଙ୍କଲକ୍ଷ୍ମୀ—  ବରହେ ଉଜ୍ଜ୍ୱଳ
ଏ ପ୍ରେମ-କୌସ୍ତୁଭମଣି
ପିନ୍ଧାଇଲ ଯେବେ  ରାଜଲକ୍ଷ୍ମୀ-ଗଳେ
ହେ ପ୍ରେମିକଚୂଡ଼ାମଣି !
କି ଉଦାର ଭାବେ  ପୂରି ଉଠିଥିଲା
ବିଶାଳ ହୃଦୟ ତବ
ଅନ୍ତର ଭୂମିର  ଭରି ଦେଇଥିଲା
କି ସ୍ୱର୍ଗୀୟ ସଉରଭ !
ସୌନ୍ଦର୍ଯ୍ୟର କେଉଁ  ଚରମ ଆଦର୍ଶ
ହୃଦୟେ କରି ବରଣ
କେଉଁ ମହାପ୍ରେମ—  ବ୍ରତ ହେ ନରେନ୍ଦ୍ର !
କରିବାକୁ ଉଦ୍‌ଯାପନ,

ନିଶବ୍ଦ ପାଷାଣ— ବକ୍ଷେ ରଚିଲ ଏ

ଅନନ୍ତ ବିରହଗାଥା

କରୁଣ ସଙ୍ଗୀତ— ମୟୀ ଏ ନୀରବ

ପ୍ରେମ-କାବ୍ୟ-କଳ୍ପଲତା ।

ଅଛି ଅପରୂପ ସୃଷ୍ଟି ଏ ଲଳିତ

କଳାର ଚୂଡ଼ାନ୍ତ ରେଖା

ଭବତଳେ ଶିଳ୍ପ ସୌନ୍ଦର୍ଯ୍ୟେ ଏହାର

ଦୋସର କାହିଁଛି ଦେଖା ?

ଧନ୍ୟ ହେଲ ନୃପ ! ଅବଗାହି ତବ

ଏ ପ୍ରେମ-ପୟୋଧି-ଜଳେ

ଧନ୍ୟ ହେଲ ବସି ସୌନ୍ଦର୍ଯ୍ୟର ଏହି

କା[illegible]କଣ୍ଠ ଛାୟାତଳେ,

ଧନ୍ୟ ହେଲ ଶୁଣି ଏ ନୀରବ ଗୀତ

ତବ ହୃଦୟ-ବୀଣାର

ରହି ରହି ଏଥି ଝଙ୍କାର ଉଠେ ବା

ବାକ୍ୟହୀନ ହାହାକାର !

ବିରହ-କରୁଣ ଦୀର୍ଘଶ୍ୱାସ ତବ

ଲହରି ଲହରି ଉଠି

ସତେ ଛୁଇଁ ଯାଏ ନିଖିଳ ପରାଣ

ପାଷାଣବକ୍ଷରୁ ଫୁଟି ।

ପ୍ରେୟସୀବିରହେ ଶୂନ୍ୟାୟିତ ତବ

ବିଦଗ୍ଧ ହୃଦୟଦେଶେ

ଜାଗିଲା ଯେ ବ୍ୟଥା, ଢୁଳ ବୁଲେ ତା କି

ଏଥି ଅଣସଣ କେଶେ ?

ବରହବଧୂର ତବ ଅମ୍ବାର ଏ
ମଧୁର ପରଶ ଲଭି
ପାଷାଣ ହୃଦୟ ମୋର ଅଜ ସିନା
ସୁଧାରସେ ଯାଏ ଦ୍ରବି ।
ତବ ହୃଦୟର ଆକର୍ଷଣେ ସିନା
ଧାନ ଧ୍ୟାନ ମର୍ତ୍ତ୍ୟବାସୀ
ରୁଣ୍ଡ ହେଉଛନ୍ତି କାଛ କାଛ ଏଥି
ଦୂରଦୂରାନ୍ତରୁ ଆସି ।
କେ କରଇ ସୁଖେ ପ୍ରେମାମୃତ ପାନ
କେ ପିଏ ସୌନ୍ଦର୍ଯ୍ୟସୁଧା
କେ କରେ ଆନନ୍ଦ— ମଦିରା ସେବନ
ମେଣ୍ଟାଇ ପରାଣ କ୍ଷୁଧା ।
କେହୁ ବା ରଚଇ ଗଗନେ ପ୍ରାସାଦ
ମନମୋଦକ ସ୍ୱପନେ
କେହୁ ଭ୍ରମୁଛଇ ଦୂର ଅତୀତର
ମୋହନ ନନ୍ଦନବନେ ।
ବିସ୍ମୟେ ମଗନ ବିଶେଷଜ୍ଞ ଦେଖି
ଏ ଶୃଙ୍ଗ-କଳା-ଶୃଙ୍ଖଳା
କେ ବା ଆସ୍ୱାଦଇ ସୂକ୍ଷ୍ମଶିଳ୍ପ କାବ୍ୟ
ସଙ୍ଗୀତ ରସମାଧୁରୀ ।
ପଲ୍ଲବେ ପ୍ରସୂନେ ମଞ୍ଜରୀ ମୁକୁଳେ
କୁସୁମ ସୌରଭେ ଭରି
ସଜେ ତବ ପ୍ରେମ— କଳ୍ପଲତା ବଣ୍ଟୁ-
ମୋହନୀ ମୂରତି ଧରି ।

ଦଣ୍ଡେ ମାତ୍ର ତବ ପୁଣ୍ୟପୂତ ଏହ୍ନ
ନୈମିଷ କାନନେ ବସି
ବିଷୟ୍ନ-ବିଷାକ୍ତ ବାସନା-ନିର୍ମୋକ
ହୃଦୟୁଁ ପଡ଼େ ମୋ ଖସି ।
ଲଘୁ ହୋଇଯାଏ ଯନ୍ତ୍ରଣାର ଭାର
ଶମଇ ହୃଦୟ୍ନ ବ୍ୟଥା
କାହୁଁ ଆସି ଛୁଇଁ— ଯାଏ ମର୍ମ ମୋର
ଅଦ୍ଭୁତ ଉଦାରତା ।
କେଉଁ ବଡ଼ ପ୍ରାଣ ଯେବେ ନ ଜାଣି ବା
ଜନ୍ମିଥିଲ ଧରିତଳେ
କି ମହା ଆଦର୍ଶ ପୋଷିଥିଲ ବା ସେ
ସୁକୋମଳ ବକ୍ଷସ୍ଥଳେ ?
ବହୁଥିଲା ତବ ଅନ୍ତରେ ଅନ୍ତରେ
କି ରସ-ମାଧୁରୀଧାର
ଉଠିଥିଲା ତବ ସଦାକାଳେ କେଉଁ
ପ୍ରେମର ଅଗସ୍ତ୍ୟ ତାର ?
ବିଶାଳ ସାମ୍ରାଜ୍ୟ— ଶାସନେ ନିରତ
ଥିଲେହେଁ ଦିବା ରଜନୀ
ମଧ୍ୟେ ମଧ୍ୟେ କେଉଁ ସ୍ୱର୍ଗର ସ୍ୱପନ
ଦେଖୁଥିଲ ନୃପମଣି ?
କେଉଁ ଅନାମୟ୍ନ ଦେଶର ସଙ୍ଗୀତ
ତବ ହୃଦୟ୍ନ-ବୀଣାରେ
ରହି ରହି ବାଜି ଉଠୁଥିଲା ମନୋ-
ମୋହନ ମଧୁଝଙ୍କାରେ ?

କଳ୍ପନା ଭ୍ରମର ଅନୁସର କେଉଁ
ଅମରାବତୀ-ବଭବ
ଅଙ୍କି ଦେଉଥିଲ ନତ୍ୟ ସୌନ୍ଦର୍ଯ୍ୟର
ଗୃହୁ ଛବ ନବ ନବ ?
ଅନନ୍ତ ସୌନ୍ଦର୍ଯ୍ୟ ଫୁଟି ଉଠୁଥିଲା
ହୃଦୟ-ନନ୍ଦନବନେ
ବାଜ ଉଠୁଥିଲା ଶାଶ୍ବତ ସଙ୍ଗୀତ
ତବ ରାଜନ୍ୟ ଜୀବନେ ।
ପରମଳମୟ ହେଉଥିଲା ତହୁଁ
ତବ ରାଜକାର୍ଯ୍ୟଚୟ
କଠୋର କର୍ତ୍ତବ୍ୟ— ନକରେ କରଣ
ମଧୁର ସଙ୍ଗୀତମୟ ।
ସେ କଠୋରତାର ତଳେ ବହୁଥିଲା
ଅନନ୍ତର ଫଲ୍‌ଗୁଧାରା
ସୌନ୍ଦର୍ଯ୍ୟପ୍ଲାବନେ ପ୍ଲାବଦେଲା ଯାହା
ନଖିଳ ଭାରତସାରା ।
ଅମଳ ଧବଳ ବାସନା-କମଳ
ଦବ୍ୟ ସୌନ୍ଦର୍ଯ୍ୟେ ବଭୂଷ
ତବ ହୃଦ ପ୍ରେମ— ସଂରେ ନତ୍ୟ'ନତ
ଫୁଟୁଥିଲା ରାଶି ରାଶି ।
ଦୈବ ଦୁର୍ବିପାକେ ଦନେ ଅହୋ ଏକ
ମତ୍ତ ଦନ୍ତାବଳ ଅସି
ସେ କମଳବନ— ସୁଷମାସମ୍ଭାର
ସମୂଳେ ଦେଲା ବନାଶି ।

କର୍ମନାଶା-ସ୍ରୋତେ ଲୀନ ହୋଇଗଲା
ସେ ବିମଳ ଫଲ୍‌ଗୁଧାର
ନୀରବ ହୋଇଲା ସେ ମଧୁ ସଙ୍ଗୀତ
ନନ୍ଦନ ହୋଇଲା ଛାର । ୪

ଝଡ଼ି ପଡ଼ିଗଲା ଅକସ୍ମିକ ଏହୁଁ
ବିଷାକ୍ତ ଝଞ୍ଜା ପବନେ
ସ୍ଫୁଟୋନ୍ମୁଖ କେତେ ସୌନ୍ଦର୍ଯ୍ୟ-କଳିକା
ତବ ହୃଦ-କୁଞ୍ଜବନେ ।

ତବ ଭାଗ୍ୟେ ଏହା ଘଟାଇଲା ଯେହୁ
ସେହୁ ନରକୁଳାଧମ
ବନ୍ଧୁ ନ ଥିଲା କିଂ ମାନବ ସମାଜେ
ଭୂର୍ମ୍ୟେ ଅସ୍ମକ ନାମ ?
ବନ୍ଧୁ ନ ଥିଲା କି ହୃଦୟେ ତାହାର
ତବ ହୃଦୟ-ଶୋଣିତ
ହୋଇ ନ ଥିଲା କି ସେ କୁଳପାଂଶୁଳ
ତବ ବାତ୍ସଲ୍ୟେ ପାଳିତ ?
କେମନ୍ତେ ବୁଝିବ ତବ ହୃଦୟର
ସେ ପ୍ରେମ-ସୁଧାସାଗରୁ
କାହିଁ ବାହାରିଲା ବିଷବଲ୍ଲୀ-ବେଢ଼ା
ଏ ବିଷମ-ବିଷ-ତରୁ ?
ବିଧିବଶେ ଭବେ କି ନ ଘଟେ ? ଭବେ
ବଧିଛି ସିନା ପ୍ରବଳ
ଯହୁଁ ଜାତ ସୁଧା ତହିଁରୁ ତ ପୁଣି
ଜନ୍ମିଅଛି ହଳାହଳ ।

ତୁମ୍ଭର ପବନ ହୃଦୟଶୋଣିତ
ବହୁଥିଲା ଯାର ପ୍ରାଣେ
ସେ ପୁଣି ହୋଇଲା ଭୀଷଣ ଜଳୌକା
ତବ ଜୀବନଶୋଷଣେ ।
ତନୁଜ ତୁମ୍ଭର ଏମନ୍ତ ଦନୁଜ-
ବେଶରେ ହେଲେହେଁ ମତ୍ତ
ମନୁଜ-ଈଶ୍ୱର ନାମ ବୋଲାଇଲା
ସର୍ବେ ହେଲେ ପଦାନତ ।
ନ ଥିଲେ କି କେହୁ ରାଜଭକ୍ତ ବୀର
ନିଖିଳ ଭାରତ ମଧ୍ୟେ
ଭେଟିବାକୁ ସେହୁ ରାଜଦ୍ରୋହୀ-ଶିର
ଦିଲ୍ଲୀଶ୍ୱର-ପୂତପଦେ ?
ସେ କାଳେ ତ ଦିଲ୍ଲୀ- ଶ୍ୱରଙ୍କୁ ଭାରତେ
ଜଗଦୀଶ୍ୱର ପରାୟେ
ପୂଜୁଥିଲେ ସର୍ବେ— ସେ କେବଳ ସିନା
ଜଘନ୍ୟ ପରାଣଦାୟେ ।
ନଥିବା ନୟନ ନିମେଷେ ଅସଂଖ୍ୟ
ସୁଶାଣିତ ତରବାରେ
'ଜୟ ଦିଲ୍ଲୀଶ୍ୱର' ସିଂହନାଦ ସଙ୍ଗେ
କୋଷୁଁ ଥାଅନ୍ତା ବାହାର ।
ତୁମ୍ଭ ପରି ପିତା ଲଭିବା ପାମର
ଶ୍ଲାଘ୍ୟ ନ ମଣି ଜୀବନେ
ଅବଜ୍ଞା କରି ଯା ରଖିଲା ତୁମ୍ଭଙ୍କୁ
ବିଜନ କାରା-ଭବନେ ।

ଏବେ ବୃଦ୍ଧ, ଦୁବେ		କଠିନ ପୀଡ଼ାରେ
ହୋଇଥିଲ ଅସହାୟ
ମଉନେ ସହିଲ		ମୃଗ-ପଦାଘାତ
ମୁମୂର୍ଷୁ କେଶରୀ ପ୍ରାୟ ।
ହୀରା ନୀଳା ମୋତି		ମାଣିକ୍ୟରେ ଭରି
ରଖିଥିଲ ରାଜକୋଷ
କେତେ ଲକ୍ଷ ଲକ୍ଷ		ଦୁଃସ୍ଥ ରଙ୍କ ଜନ
ଥିଲେକି ତୁମ୍ଭର ପୋଷ୍ୟ ।
ତବ ଭାଗ୍ୟେ ପୁଣି		ଲେଖିଥିଲା ବିଧି
ଘୋଡ଼କଦାନା ସେବନ
ଫାଟିଯାଏ ଛାତି		ଶୁଣି ତବ ଶେଷ-
ଜୀବନର ନିର୍ଯାତନ ।
ସୁରମ୍ୟ ମୟୂର—		ସିଂହାସନେ ବସି
ଲଭୁ ନ ଥିଲେ ଯେ ଶାନ୍ତି
ସେବୁଥିଲେ ଯେହୁ		କେତେ ନବ ନବ
କୋମଳ ଶେଯ ସୁଖାତି,
ବିଳାସି-ଶେଖର		ସେହି ଦିଲ୍ଲୀଶ୍ୱର
ଅହୋ ଲକ୍ଷଟଳଖନେ
ଯାପିଲେ ଜୀବନ—		ସନ୍ଧ୍ୟା କାରାଗାରେ
ରୁକ୍ଷ ଧରଣୀ-ଶୟନେ ।
ଯୌବନସୁଲଭ		ଐଶ୍ୱର୍ଯ୍ୟ ବିଳାସେ
ମଣୁଥିଲ ଯାହା ହେୟ
ଭାଗ୍ୟବିପର୍ଯ୍ୟୟେ		ସେହି ଖାଦ୍ୟ ପୁଣି
ହେଲା ଅତି ଉପାଦେୟ ।

ତାହା ପୁଣି ତୁମ୍ଭେ                ନିଜେ ଅର୍ଜୁଥିଲ
ସ୍ୱହସ୍ତେ ଶୋଷଣ ଲେଖି
ସେ ପାପରାଜ୍ୟର                ପାପାର୍ଜିତ ଧନ-
ସମ୍ଭୋଗ ହେଲେ ଉପେକ୍ଷି ।
ନିଖିଳ ପ୍ରକୃତ—                ପୁଞ୍ଜେ କି ନ ଥିଲେ
ସହୃଦୟ ମତମାନ
ଅନୁଭବବାକୁ                ଭାରତେଶ୍ୱରଙ୍କ
ଏ କପଣ ଗଣ୍ଡସ୍ଥାନ ?
ପୂଜନବିଶେଷେ                ପାଳୁଥିଲେ ଯେହୁ
ପ୍ରକୃତପୁଞ୍ଜ ଅନନ୍ଦେ
ଯାଙ୍କ ରାମରାଜ୍ୟେ                ଥିଲେକ ସରବେ
ପ୍ରଜାଏ ସୁଖ ସ୍ୱଚ୍ଛନ୍ଦେ,
ସେ ପ୍ରଜାବତ୍ସଳ                ଭାରତେଶ୍ୱରଙ୍କ
ଏତେ ନିର୍ଯାତନ ସତ୍ତ୍ୱେ
ନିଖିଳ ଭାରତ                ତୁନ ହୋଇ ସଁତେ
ଦେଖୁଥିଲା ବା କେମନ୍ତେ ?
ଏ ଘୋର ପାତକେ                ଭାରତବାସୀଏ
କେମନ୍ତେ ଦେଲେ ପ୍ରଶ୍ରୟ ?
ବିଗଳିତ ହୋଇ                ନ ଗଲା କେମନ୍ତେ
ତାଙ୍କ ପାଷାଣହୃଦୟ ।
ଶକ୍ତି ସତ୍ତ୍ୱେ ଯେହୁ                ଅନ୍ୟାୟ ବିରୁଦ୍ଧେ
ଖଡ୍ଗ ନ ଧରେ ସତ୍ୟରେ
ଅନ୍ୟାୟର ପକ୍ଷ                ସମର୍ଥନ ସେ ତ
କରଇ ପ୍ରକାରାନ୍ତରେ ।

ସେ ପାପରୁ ସତେ          ଭାରତ କି ଅବା
ହେଉଛ ସଦା ଲାଞ୍ଛିତ
ଭାରତବାସୀଏ          ତେଣୁ ଉପବାସୀ
ଅନଶନେ ନିପୀଡ଼ିତ ।
ଭୂବତଳେ ତବ          ସ୍ୱର୍ଗତ ପତ୍ନୀଙ୍କ
ପ୍ରେମ-ମନ୍ଦାକିନୀଧାର—
ଶୀକର ପରଶେ          ତବ ହୃଦ-ମରୁ
ଶମୁଥିଲେ ହାହାକାର ।
ରଜ-ଅଙ୍କ ଲଭି          ତବ ବାସଗୃହେ
ପରବେଶି ହେମାମଣି
ହରି ନେଉଥିଲେ          ଦୁଃଖ ତବ କେତେ
ମଧୁର ବଚନ ଭଣି ।
ତାର ଦରଶନେ          ତବ ହୃଦପଟେ
ବିମଳ ଜ୍ୟୋଛନା ଭାତି
ଖେଳି ଯାଉଥିଲା          ଭେଦଣ ସେ ଘୋର
ନୈରାଶ୍ୟ-ତମିରରାତି ।
ଜାଗି ଉଠୁଥିଲା          ମଧୁମୟୀ ସ୍ମୃତି
ତବ ମୃତ ପ୍ରେୟସୀର
ଆନନ୍ଦ ଝଟକ          ଖେଳି ଯାଉଥିଲା
ଭେଦ ବିଚ୍ଛେଦ-ତମିର ।
ଶାନ୍ତି ଉଠୁଥିଲା          ହୃଦୟ ଭ୍ରମର
ପ୍ରେୟସୀ-ସ୍ମୃତି-ବିଭବେ
ଆମୋଦିତ ହୋଇ—          ଥିଲା ମନ ପ୍ରାଣ
ନନ୍ଦନବନ-ସୌରଭେ ।

ସେହ ପ୍ରିୟତମା ତନୟାକୁ ତବ
ଅଗାଧ ସ୍ନେହ ପ୍ରକାଶି
"ଚିରପୁତ୍ରହୀନା ହୁଅ ତୁ କଲ୍ୟାଣି ।"
ଯ୍ୟ-ଅଶିଷ ଥିଲ ଭାଷି;
ପୁତ୍ରଲବ୍ଧରୁ କି ବିଷମୟ ଫଳ
ଫଳଇ ନରଜୀବନେ
ସମ୍ୟକରୂପେ ତା ଯେଣୁ ଅନୁଭବ-
ଥିଲ ମରମେ ମରମେ ।
ପୁତ୍ର ଲଭି ଜନେ ଉଦ୍ଧରନ୍ତି ସିନା
ପୁଂନାମକ ନିରକରୁ
ପୁତ୍ରସ୍ନେହଧାର ଶୀତଳଇ ସତେ
ଦଗଧ ଏ ଭବ-ମରୁ ।
ପୁତ୍ରଲାଭ ଲାଳ— ସାରେ ତେଣୁ ଜନେ
ପୂଜନ୍ତି ହରପାର୍ବତୀ
ମାତ୍ର ପୁତ୍ର ହେତୁ ହେଲ୍ନ ସିନା ତବ
ଏସନ ଘୋର ଦୁର୍ଗତି ।
ତବ ଜୀବନର ଦୁର୍ଦ୍ଦଶା ସୁମରି
ଭବେ ପୁଣି କେଉଁ ମୂଢ଼
ପୁତ୍ରଲାଭ ଅର୍ଥେ ପୋଷିବ ହେ ଅଜ
ହୃଦୟେ ବାସନା ଦୃଢ଼ ?
ଛନ୍ଦନା ପଣଇ ଘଟରେ ଏଭଳ
ପୁତ୍ରର କର୍ମ ସୁମରି
କେମନ୍ତେ ନ ଜାଣି ସହିଥିଲେ ଏହା
ଭୂତଧାତ୍ରୀ ବସୁନ୍ଧରୀ ?

ଏତେ ଦୁଃଖ ଦେଲ ତଥାପି ମସ୍ତକ
ଯଥେଷ୍ଟ ନ ମଣି ତାହା
ନରନ୍ତର ଚନ୍ଦ୍ର— ଥିଲ ମନେ ମନେ
ତବ ଅଶ୍ରୁ ମୃତ୍ୟୁ ଅହା !
ଅନ୍ତରେ ଫଳିଲ ସେ ଆଶା-ବ୍ରତତୀ
ତବ ପୁତ୍ର ମସ୍ତକର
ପ୍ରାଣ-ବହଙ୍ଗମ ଉଡ଼ିଗଲ ଛାଡ଼ି
ଭଙ୍ଗୁର ମର ଶରୀର ।
ପ୍ରିୟାର ସମାଧି— ଦରଶନ ଆଶା
ଅନୁକ୍ଷଣ ମନେ ମନେ
ପୋଷି ରଖିଥିଲ ହେ ବରହସ୍ତୀଜ !
ବଇନ କାରା-ଭବନେ ।
ଚିରପ୍ରିୟ ସେହ ସମାଧିଭବନ-
ଶେଷ ଦରଶନ ଆଶେ
ଏକଥି ଗୁହାର କରିବାକୁ ହେଲ
ନୃଶଂସ ସମ୍ରାଟ ପାଶେ ।
ସେ ପାତକୀ ନାମ— ସ୍ମରଣେ ନଜକୁ
ମଣୁଥିଲେହେଁ ଅଶୁଚି
ଅନ୍ତିମ ସମୟ ସମାଗତ ଜାଣି
ଜଣାଇଲ ଅଭିରୁଚି ।
ଅଚଳ ନୟନେ ପ୍ରିୟାର ସେ ଶେଷ-
ଶୟନେ ଦିଅନ୍ତେ ଦୃଷ୍ଟି
ଦୁଇ-ବନ୍ଦୁ ଅଶ୍ରୁ ଝରିଲ ମଉନେ
ପାଣ୍ଡୁର କପୋଳବାହି ।

ମୁଦ୍ରିତ ହୋଇଲା    ଯୁଗଳ ନୟନ

ତକ୍ଷଣେ ମହାଶୟନେ

ରୋମାଞ୍ଚ ଲଭିଲେ    ଜ୍ୟୋତିଷ୍କମଣ୍ଡଳୀ

ଦୂର ଅନନ୍ତ ଗଗନେ ।

ଶିହରି ଉଠିଲେ    ମାତା ବସୁନ୍ଧରା

ହରାଇ ପ୍ରିୟ କୁମରେ

ଶିଥିଳିତ କର    ରାଜଦଣ୍ଡ ତବ

ଯଦୁ-ବଂଶଧର-କରେ ।

ରାଜପୁର ହେଲା    ରାଜଲକ୍ଷ୍ମୀଙ୍କର

ବିଳାପେ ପ୍ରତିଧ୍ୱନିତ

ଯମୁନାର ବକ୍ଷେ    ନାବିକଙ୍କ କର

ନଶୀଥେ ସ୍ତିତ ଚକିତ ।

ଜ୍ୟୋସ୍ନା ରଜନେ ଏଥୁ    ସୌଧଚୂଡ଼େ ବସି

ଲଳିତ କଳା ମଞ୍ଜରୀ

ଅଦ୍ୟାପି ଗାବନ୍ତି    ସେହୁ ସୁକରୁଣ

ଗୀତସ୍ୱର ଅନୁକରି ।

ତା ସଙ୍ଗେ ବାଜଇ    ଯମୁନାର ମୃଦୁ-

କଳନାଦୀ ଜଳବୀଣା

ସେ ଯେଣୁ ସହଜେ    ବିରହ-ବିଧୁର

ଶୋକ-ସଙ୍ଗୀତେ ପ୍ରବୀଣା ।

# ଭାଇ

ପଣ୍ଡିତ ଶ୍ରୀ ଗୋଦାବରୀଶ ମିଶ୍ର, ଏମ୍. ଏ., ବି. ଟି

ମରଣେ ମୁଦ ସେ ନୟନଯୁଗଳ
ଅନ୍ତିମ ତଳପେ ଶୋଇଛୁ ଭାଇ
ସୋଦର ବନତା ତନୟ ସେନେହ
ପଶୁଣୁ କଠୁରେ ବସୋଇଦେଇ ।
କୁଟୀରୁ ଅନ୍ତର କରି ନେଇ ତୁମ
ଶ୍ମଶାନେ ଦେବେଟି ସେ ତନୁ କାଳ
ପ୍ରତିବାସୀ ଶରି ହୃଦ୍ ବେନାବେନ
କରିଦ୍ୟ ଚିତା ଅନଳେ ଢାଳି ।
ତନୟ ବନତା କରୁଣ ବିଳାପେ
ପୂରିଛୁ ତାପିତ କୁଟୀରସାରା
କାଢି ଯହିଁ ଖେଳେ ସ୍ନେହ ସୁଧାହାସ
ବହେ ଅଜ ଶୋକ-ଲୋତକଧାରା ।
ଭାଇଟି ମାରବେ ଠିଆହୋଇ ପାଶେ
ଉଦାସେ କି ଅବା ଭାଳଇ ମନେ
ଯୁଗଳ ଜୀବନେ କେତେ ତ କାନ୍ଦିଛୁ
ଲୁହ ନାହିଁ ଅଜ ନୟନକୋଣେ ।
କରମେ ବିରାମେ, ଶୟନେ ସପନେ
ଭାଇଟି ଏକା ସେ ଧିଆନ ତାର
ମୋହନ ନବେଶେ ବନ୍ଧୁଯାଏ ହୃଦେ
ସୋଦର ନିସର୍ଗ ସେନେହ ଭାର ।

ଅଧିକୁ ଅଧିକ ବଢ଼ଇ ବିଳାପ
କ୍ଷଣୁ କ୍ଷଣେ ଆସି କାନ୍ଦଇ ବସି
ଝୁଇଟି ନୀରବେ ହୋଇଛୁ ଠିଆ ତ
ବନ୍ଧୁ ବାର ନେହେ ନ ଉଠେ ଭାସି ।
ପ୍ରତିବାସୀ ଜନେ ଉଠାଇ ଶବଟି
କୁଟୀରୁ ଅନ୍ତର କଲେକ ତହୁଁ
ଅଶ୍ରୁ ନୀରେ ଗଳ୍ପ ଛନ୍ତ ଭାଇ ତନୁ—
'କା ଲାଗି ଭାଇ ଏ କୁଟୀର ଅଜ ?'

## ପ୍ରତ୍ୟାଖ୍ୟାନ

ପଣ୍ଡିତ ଶ୍ରୀ ଗୋଦାବରୀଶ ମିଶ୍ର, ଏମ୍. ଏ., ବି. ଟି.

ଏକାଟି କଇଁ ମୁଁ ଫୁଟି ସରୋବରେ
ଯାଚିଲି ଯାମିନୀସାରା
ଉଷା ରବକରେ ମୁଦିଲି ନୟନ
ଧରେ ଗୋର ଜୀବନଭରା ।
ତପନ ପାବକେ ଯାଇଥିଲି ଜଳି
ପବଣ ସୋହାଗ ଡେଙ୍କି
ବାସନା ଶ୍ମଶାନେ ସକାଡ଼ ଉଦାସେ
ପାଖୁଡ଼ା କେଶରଗୁଛ ।

ଫୁଟିଲି ପୁଲକେ କମଳକଳିକା
ଟଳଲି ସରସୀନୀରେ
ସମୀର ହିଲ୍ଲୋଳେ ଖେଳିଲି ସଙ୍ଗେ
ଦେଖିଲେ ସୁମନେ ଟୁରେ ।
ମୁହିଁ ସେତେବେଳେ ଲୋଡ଼ି ତ ନ ଥିଲି
ଉଠିବ ମୁଁ ନିଦ୍ରା ଭାଙ୍ଗି
ଭାବି ତ ନ ଥିଲି ମୋରେ କେ ଗୃହିଁଛି
ମୁହିଁ ଅବା କାହା ଲାଗି ?
ତୁମେ କିପାଁ ଏବେ ଉଠାଇଲ ବନ୍ଧୁ
ଦୂର ଅନ୍ତରୀକ୍ଷ ତାରା
ମରଣେ ଢାଳିଲ ପ୍ରୀତି ପରିଦାନେ
ଅମର ପୀୟୂଷଧାରା ?
ବିଜନେ ଥିଲି ମୁଁ ବିପିନବାସୀ
କଲ ବିଜନତା ଦୂର
ସହସ୍ର ଯୋଜନେ ରହି, କଲ ଏଥି
ହ୍ରଦ-କଳି-ହୃଦ ଚୂର ।
ମରତେ ଜନମ, ମରତେ ବାସ ମୋ
ମୋ ସ୍ୱର୍ଗ ମରତ ଶିଶି
ଜୀବନ ମରତ ସୁଖେ ଯିବା ପାରେ
ଏ ମରତଦେହ ଢାଳି ।
ସମୀର ପରଶେ ଖେଳିବ, ସଳିଳେ
ଦେଖିବ ବଦନଠାଣି
ଝରି ଫୁଲ ତୁଲେ କୁହାକୁହି ହେବ
ହୃଦୟ ଗୁପତ ବାଣୀ ।

ଏହା ସିନା ପ୍ରୀତି ପରଶମଣି ହେ
ଝେଢ଼ଇ କରିଁଛି ପ୍ରାଣେ
ନିମିଷକ ଦୂରେ ରହି କି ପାରିବ
ସ୍ମର ସ୍ନେହ ସ୍ୱଜନମାନେ ?
ଏହି କଥାମାନ ସ୍ମରଣେ ଯେବେ ମୋ
ହେଲା ନାହିଁ ଲଭିବାର
କି ସୁଖ ପ୍ରିୟ ହେ, ନିମିତେ ଜଗତେ
ବନ୍ଧୁ ଏ ଜୀବନସ୍ୱର ?
ପ୍ରାଚୀଗଗନ ଦିଶିଲାଣି ତୋର
ଅରୁଣ କନକ ଡାଲି
ମୁଁ ଏବେ ତୃପତେ ମୁଦିବି ନୟନ
ଅତଏ ଏ ତନୁ ଢାଳି ।
ନାହିଁ ଜାଣାମଣି ଉଠାଇବ ଅଉ
ଏ ଦୀର୍ଘ ଦିବସ ପାରେ
ଦୂର ବ୍ୟୋମବାସି, ବ୍ୟୋମବାସେ ରହ
ମୁଁ ବୁଡ଼େ ସରସୀନୀରେ ।

# ଗ୍ରାମ୍ୟ ଶ୍ମଶାନ

( Grey's Elegyର ଅବଲମ୍ବନରେ )

ଶ୍ରୀ ଜଗନ୍ନାଥ ତ୍ରିପାଠୀ, ବି. ଏ., ବି. ଟି

ଅରତି ଘଣ୍ଟା ବାଜେ ଦେବ-ମନ୍ଦିରେ
ପ୍ରାନ୍ତରେ ଫେରୁଛନ୍ତି ଗୋଧନ ଧୀରେ ।
କ୍ଲାନ୍ତ କୃଷକ ଫେରେ ନିଜ ସଦନେ
ଗମ୍ଭୀର ଭାବ ଜାଗେ ମୋହର ମନେ ।

ଲୁଚିଯାଉଛି ସ୍ଥଳ— ଦୃଶ୍ୟ ବନ୍ଧନ
ଗମ୍ଭୀର ନିସ୍ତବ୍ଧତା ବ୍ୟାପେ ଭୁବନ ।
କେବଳ ଶୁଭେ ବନ— ମକ୍ଷିକା ନାଦ
ଅବା ମନ୍ଥୁ-ଗଳା— ଟିପା-ଶବଦ ।

ଅଗ୍ରେ ଲତା-ଜଡ଼ିତ ତରୁ-କୋଟରେ
ପେଚକ ଶଶଧରେ ଗୁହାରି କରେ—
ବନ୍ଧୁକାନ୍ତ ରୁଜନ୍ତି ଏଥି ମୋହର
ଦ୍ୱନ୍ଦ୍ୱ ଜନ୍ମାଏ ପାଶ— ବଡ ପାମର ।

ଏ ବୃକ୍ଷ ବଟଛାୟା— ତଳେ ନୀରବେ—
ଯହିଁ ସଂଜନ୍ତ ଶ୍ୟାମ ହୃଦ ସରବେ—
ବସୋଇ ମାୟା କର— ଛନ୍ତି ଶୟନ
ଏ କ୍ଷୁଦ୍ର ପଲ୍ଲି-ପୂର୍ବ— ପୁରୁଷଗଣ ।

ସୁଶୀତଳ ପ୍ରଭାତ       ମନ୍ଦ ମରୁତ
ଅବା କଜ୍ଜଳପକ୍ଷୀ—       ମଧୁର ରୁତ ।
ଚରଣାୟୁଧ ଡାକ       ଶିଙ୍ଗା କସ୍ୱନ
ଏଥିରେ ନ ଚେଇଁବେ       ଅଜ ଶୟନ ।

ତାଙ୍କ ପାଇଁ କଲବ       ନାହିଁ ଇନ୍ଧନ
ଗୃହିଣୀ କାର୍ଯ୍ୟେ       ନ କରିବ ଯତନ
ଦଉଡ଼ି ନ ଆସିବେ       ସନ୍ତାନଗଣ
ଅଗ୍ରେ ଲଭିବା ପାଇଁ       ପିତୃ-ଚୁମ୍ବନ ।

କେତେ ଶସ୍ୟ ସେ କାଟି—       ଥିଲେ ସ୍ୱକରେ
ଚଷି କଠିନ ଭୂମି       ଲଙ୍ଗଳ ଗାରେ ।
କି ପ୍ରେମେ ନେଉଥିଲେ       କେଦାରେ ହଳ
ବନ ବଳିତ ଦେଖି       ତାଙ୍କର ବଳ ।

ଚ୍ଛାଭିଲାଷ । ପର—       ହାସ ନ କର
ଶୁଣି ତାଙ୍କର ତୁଚ୍ଛ       ସୁଖ ଖବର ।
ରେ ଅଡ଼ମ୍ବର । ତୁଚ୍ଛ       ମନ୍ଦେ ନ ହସ
ଶୁଣିଣ ନିଃସ୍ୱଙ୍କର       ଏ ଇତିହାସ ।

କି କୁଳ ଅଭିମାନ       ବଳ ଗରିମା
ସୌନ୍ଦର୍ଯ୍ୟ ସମ୍ପଦର       ଯେତେ ମହିମା
ସର୍ବେ କାଳକୁ ଗୃହିଁ—       ଛନ୍ତି ସନ୍ତତ
କାରଣ ପ୍ରେତଭୂମେ       ଦେଖାଏ ପଥ ।

ଦାମ୍ଭିକେ ! ଏଥି କିଛୁ        ଦୋଷ ନ ଧର
ମାହିଁ ସ୍ମାରକ ସ୍ତମ୍ଭ        ଶ୍ମଶାନ ପର
କହିବାକୁ ପୁରାଣ        କାହାଣୀ ଯାହା
ଦେଖାଇଥାନ୍ତା ତାଙ୍କ        ଜୀବନ ସ୍ୱାହା ।

ଖୋଦିତ କୀର୍ତ୍ତି ଅବା        ପ୍ରତିମୂରତି
ଫେରାଇ ପାରିବ କି        ଆତ୍ମାର ଗତି ?
ସମ୍ମାନ ସ୍ୱରେ ସଞ୍ଚ—        ଶବ ଜୀବନ
ତୋଷାମୋଦ କି ହେବ        ଶ୍ରୁତିରଞ୍ଜନ ?

ମଣେ ଏ ସ୍ଥଳେ ଥିବେ        କେତେକ ଜନ
ସ୍ୱର୍ଗୀୟ ଭାବେ ଭରା        ଯାହାଙ୍କ ମନ ।
କେ କରିଥାନ୍ତେ ରାଜ—        ଦଣ୍ଡ ଧାରଣ
କେ ଲଭି ପାରିଥାନ୍ତେ        କବିଆସନ ।

ପ୍ରାଚୀନ ଇତିବୃତ୍ତ        ଅମୂଲ୍ୟ ପେଡ଼ି
ଜ୍ଞାନ-ଭଣ୍ଡାର ଭଳି        ନ ଥିଲେ ଫେଡ଼ି
ଦାରିଦ୍ର୍ୟ ଦେଲା ତାଙ୍କ        ମହତ୍ତ୍ୱ ସାରି
ନରର କୀର୍ତ୍ତି ଅଭି        ତେଡ଼େ ଉଗାରି ।

କେତେ ଅମୂଲ୍ୟ ସ୍ୱଚ୍ଛ        ଉଜ୍ଜ୍ୱଳ ମଣି
ସାଗରତଳେ ଅଛି        ନୁହଇ ଗଣି ।
କେତେ ସୁବାସ ଫୁଲ        ଫୁଟେ କାନନେ
ନଷ୍ଟ କରଇ ମଧୁ—        ରତା ବିଜନେ ।

ଆଇପାରନ୍ତି ଏଥି    ଏମନ୍ତ ଜନ
ହୋଇଥାଆନ୍ତେ ଯେତୁ    ଭୀମ ସମାନ ।
ମୂଢ଼ ମୂର୍ଖର ଅବା    ଥିବେ ଏ ସ୍ଥଳେ
ନ ଲଭି ସମାଦର    ଭବ-ମଣ୍ଡଳେ ।

ଅଥବା ଥିବେ ଏଥି    ପ୍ରତାପ ସିଂହ
ସାହସ ପରାକ୍ରମେ    ଯେସନ ସିଂହ ।
ଶ୍ୱାପଦ ଦଳ ଚଳି    ଘୀରଢ-ବାଟେ
ଖ୍ୟାତିଲାଭ ନ ଥିଲା    ତାଙ୍କ ଲଲାଟେ ।

ସଭାସଦ-ମଣ୍ଡଳୀ    ସ୍ତୁତି ଗ୍ରହଣ
ଦେଖାଇ ଦୁଃଖ ଭୟେ    ସେ ହେୟ ଜନ
ସ୍ୱଦେଶ ଜନ୍ମ ଅବା    ଜାତି ଗଠନ
ତାଙ୍କ ଭାଗ୍ୟେ ନ ଥିଲା    ଏତେ ସମ୍ମାନ ।

ଗୁଣ ନ ଥିଲା ମାନ    ନ ଥିଲା ଦୋଷ
ଅଭାବ ଦୂର କରି—    ଥିଲା ସନ୍ତୋଷ ।
ନିଷ୍ଠୁର ହୃଦେ ବଧି    ସୋଦରଗଣେ
ସିଂହାସନ-ଲାଳସା,    ନ ଥିଲା ମନେ ।

ପାପଜନିତ ଲଜ୍ଜା    ଢାଙ୍କିବା ପାଇଁ
ସତ୍ୟ ଗୋପନେ ଯେତେ    ଯନ୍ତ୍ରଣା ଭାଇ !
ବିଳାସ ଅଭିମାନ    ପାଦ-ପୂଜନ
ଅନୁଭବ ନ ଥିଲେ    ସ୍ୱପ୍ନେ ଏମାନ ।

ତେଜ ଭବଚହଳ ମତ୍ତ ଭାବନା
କୁପଥଗାମୀ ନୋହୁ— ଥିଲୁ ବାସନା ।
ଶୀତଳ ଛାୟାମୟ ଜୀବନପଥେ
ସଯତ ଶବ୍ଦେ ଚଳୁ— ଥିଲେ ନିରତେ ।

# ବନ୍ଦେ ଉତ୍କଳଜନନୀ

ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର, ବି. ଏ.

( ଗ୍ରାମ—ସିନ୍ଧୁଡ଼ା, କାନ୍ଥାରଓ୍ୱା )

ବନ୍ଦେ ଉତ୍କଳ ଜନନୀ
ଚାରୁହାସମୟୀ ଚାରୁଭାଷମୟୀ
ଜନନୀ, ଜନନୀ, ଜନନୀ । ଘୋଷା ।

ପୂତପୟୋଧିବିଧୌତଶରୀର
ତାଳତମାଳସୁଶୋଭିତତୀର
ଶୁଭ୍ରତଟିନୀକୂଳଶୀକରସମୀର
ଜନନୀ, ଜନନୀ, ଜନନୀ । ୧ ।

ଘନ ଘନ ବନଭୂମି ରାଜିତ ଅଙ୍ଗେ
ନୀଳ ଭୂଧରମାଳା ସାଜେ ତରଙ୍ଗେ
କଳକଳ ମୁଖରିତ ଚାରୁ ବହଙ୍ଗେ
ଜନନୀ, ଜନନୀ, ଜନନୀ । ୨ ।

ସୁନ୍ଦରଶାଳସୁଶୋଭିତକ୍ଷେତ୍ରା
ଜ୍ଞାନବିଜ୍ଞାନପ୍ରଦର୍ଶିତନେତ୍ରା
ଯୋଗିଋଷିଗଣଉଟଜପବିତ୍ରା
ଜନନୀ, ଜନନୀ, ଜନନୀ । ୩ ।

ସୁନ୍ଦରମନ୍ଦିରମଣ୍ଡିତଦେଶା
ଚାରୁକଳାବଳୀଶୋଭିତବେଶା
ପୁଣ୍ୟତୀର୍ଥଚୟପୂର୍ଣ୍ଣପ୍ରଦେଶା
ଜନନୀ, ଜନନୀ, ଜନନୀ । ୪ ।

ଉତ୍କଳଶୂରବରଦର୍ପିତଗେହା
ଅରିକୁଳଶୋଣିତଚର୍ଚ୍ଚିତଦେହା
ବିଶ୍ୱଭୂମଣ୍ଡଳକୃତବରସ୍ନେହା
ଜନନୀ, ଜନନୀ, ଜନନୀ । ୫ ।

କବିକୁଳମୌଳିସୁନନ୍ଦନବନ୍ଦ୍ୟା
ଭୁବନବିଘୋଷିତକୀର୍ତ୍ତି ଅନିନ୍ଦ୍ୟା
ଧନ୍ୟେ, ପୁଣ୍ୟେ, ଚିର ଶରଣ୍ୟେ—
ଜନନୀ, ଜନନୀ, ଜନନୀ । ୬ ।

# ଧଉଳ ପାହାଡ଼

ଶ୍ରୀ ପଦ୍ମଚରଣ ପଟ୍ଟନାୟକ, ବି. ଏଲ୍.

ଧଉଳ ପାହାଡ଼, ଧଉଳ ପାହାଡ଼,
କାହିଁକି ମଉନେ ରହିଛ ଅଟଳ
ଦୟା ବାଲିରେ କେତେ ଖୋଜୁଥିବ
ଅତୀତ ଗୌରବ-ଗରବସକଳ ।
ଧଉଳ ପାହାଡ଼, ଧଉଳ ପାହାଡ଼,
ରୁକ୍ଷ ମୁଖ ଦୁଃଖେ ଘୁଳେ ଅବଶ
ତପସ୍ୱୀ ପରାଏ ବସି ରହିଅଛ
କି ଭାବନା ଭାବି ଦୟା ଶବଂଶ ?
ଧଉଳ ପାହାଡ଼, ଧଉଳ ପାହାଡ଼,
ଲକ୍ଷା ଦୁଃଖ ତେଜି ଟେକ ହେ ମଥା
ଶୁଣାଅ ସେ କାଳ ଗୌରବକାହାଣୀ
କହ ହେ ସେ କାଳ ଗରବ କଥା ।
ଧଉଳ ପାହାଡ଼, ଧଉଳ ପାହାଡ଼,
ଅଶୋକବଂଶଜ ରହିଲେ କାହିଁ ?
କାହିଁ ସେହି ଧର୍ମ କାହିଁ ବା ସେ କର୍ମ
ଥିଲେ କି ଏ କାଳେ ମିଳିବ ନାହିଁ !

ଧଉଳ ପାହାଡ଼, ଧଉଳ ପାହାଡ଼,
ଶୋଭେ ତବ ଶିରେ ଗୌରବଟୀକା
ଗୁରୁ ପରି କେତେ ନୃପତିତନୟେ
ଶିଖାଇଛ ଧର୍ମ ଦେଇଛ ଦୀକ୍ଷା ।
କଳ୍ପନାରେ ପ୍ରତେ ହୁଏ କାଲି ପରି
ଆସିଲେ ଉତ୍ତରୁ ସହସ୍ର ବୀର
ରଣମଦେ ସର୍ବେ ଶ୍ୱାପଦ ସମାନ
ଜାଣନ୍ତି କପର କାଟିବେ ଶିର ।
ସହିଁ ବାଟ କାଟି ଆସିଲେ ବହୁଳ
ରକ୍ତସ୍ରୋତ ଅଗେ ସଙ୍କେତ ପରି
ଯହିଁ ଗଲେ ତହିଁ ଖୋଳିଲେ କପର,
ଅସିମୁନେ ବେଗେ ନାଶିବେ ଅଙ୍ଗ ।
ପିଇ ପିଇ ରକ୍ତ ତୃଷା ନ ମେଣ୍ଟିଲା
ମହାନଦୀ-ତୀରେ ପଶିଲେ ଆସି
ପରଶିଲାକ୍ଷଣି ମହାନଦୀଜଳ
କରୁଁ କରନାଳ ପଡ଼ିଲା ଖସି ।
ଥର ଥର କରି ଛନ ଥର ଅସି
ଧରିଲେ ଖସିଲା ଭୂତଳେ ଖଟରେ
ଏ କି ଅଦ୍ଭୁତ କଥା ଭବି ଭବି
ଚକିତେ ସମ୍ମୁଖେ ଗୃହିଲେ ବୀରେ ।
ପର୍ବତ ପ୍ରମାଣେ ଦାଉ ଦାଉ ହୋଇ
ଦୂରରେ ଦଶିଲା ରକ୍ତଅନଳ
ମନେ ମନେ ବୀରେ ପ୍ରମାଦ ଗଣିଲେ
ଜାଣିଲେ ଏଥର ସରିଲା ବଳ ।

କର ଯୋଡ଼ି ବୀରେ ନୃପତି ସମ୍ମୁଖେ
ଜଣାଇଲେ, "ନାଥ, ନ ଯିବା ଆଉ
ଦେବଲୀଳାଭୂମି ଏ କଳିଙ୍ଗ ଭୂମି,
ବୋଲୁଛନ୍ତି ଲୋକେ ଏ ଦେଶ ଥାଉ ।"
ଦର୍ପେ ପଶ୍ଚପଦ ଭତ୍ସିଲେ ନୃପତି,
"କାହିଁ କେଉଁଠାରେ ନାହିଁ ଦେବତା
ଦେବତାର ଭୟ ଭୀରୁର ସମ୍ବଳ
ଦୀନ ଦୁର୍ବଳର ପ୍ରାଣର କଥା ।
ଅସି ମୋ ଦେବତା ସବୁ ସାଧିବାକୁ
ଏଥିରୁ କା ବଡ଼ କି ଅଛି ଆଉ ?
ଶୁଣିଛି କଳିଙ୍ଗ ବୀରଭୂମି ବୋଲି
ଜିଣିବି ଗଲେ ମୋ ଜୀବନ ଯାଉ ।
ଉଠ ଉଠ ବୀରେ, ତେଜ ହେ ବିଷାଦ
ହେଜ ହେ ଅତୀତ ଗୌରବ କଥା
କେତେ ବଜଣଲେ ଜିଣିଛୁ ଯେ ଦେଶ
କରିବା କଳିଙ୍ଗ ସେ ଦେଶ ମଥା ।"
ଚିରସାହସିକ କଳିଙ୍ଗତନୟେ
ହସି ଶତ୍ରୁ ସଙ୍ଗେ କଷିଲେ ବଳ
କେତେ କାହିଁ ଶବ ପଡ଼ି ଗଡ଼ିଗଲେ
ଅରୁଣେ ଦଶିଲା ଦଇଆ ଜଳ ।
ବିଜୟ ଉଲ୍ଲାସେ ଅଶୋକସ୍ୱଜନ
ଗଣୁଥିଲେ ବସି ଶତ୍ରୁଙ୍କ ମଥା
ଧଉଳି ପାହାଡ଼, ଭୁଜ ଭୁଜ କର
କବା ତାଙ୍କ କାନେ କହିଲ କଥା ?

ଧଉଳ ପାହାଡ଼, ଧଉଳ ପାହାଡ଼,

କି କଥା କହିଲ ରାଜାଙ୍କ କାନେ

କି ଗାଥା ଗାଇଲ, ଯହିଁକେ ରାଜନ

ବୁଡ଼ିଲେ ଅପୂର୍ବ ସମାଧି ଧ୍ୟାନେ !

ରଣୋନ୍ମାଦେ ମାତି ବିଜୟ ଉଲ୍ଲାସେ

ଗଡ଼ୁଥିଲେ ତବ ଚରଣତଳେ

ଗଡ଼ୁଥିଲେ କେତେ ଅଶାର ସଉଧ

କାନ୍ଦିକି ଭାସିଲେ ନୟନଜଳେ ?

ଧ୍ୟାନଭଙ୍ଗେ କ୍ଷଣେ ଚାହିଁଲେ ଚକିତେ

ତବ ଶିରେ, ପୁଣି ପୋଛିଲେ ମଥା

"କି କଲି ! କି କଲି !" କହିଲେ ବିକଳେ

ଲଭିଲେ ବା ପ୍ରାଣେ ଦାରୁଣ ବ୍ୟଥା !

"କି କଲି, କି କଲି, କାହିଁ ଆସି କାହିଁ

ପଡ଼ିଲି କି ଘୋର ଜିଗୀଷା-ଜାଲେ

କିବା କଥା ଲାଗି ଏସବୁ କହିଲି

ଲେଖିଲି କି ବନ୍ଧୁ ଏ ଦଶା ଭାଲେ !

ଶୋଣିତର ସ୍ରୋତ ଜଗେ ବୁହାଇଲି

କେସନ ଏ ଶୋକ 'ନଭବ ମୋର

ଆଗେ ଆଗେ ମୋର ଜଳାଇ ବସିଲି

ଜୀବନାଶୀ ଚିତା ଭୀଷଣ ଘୋର !

କେତେ ପ୍ରାଣୀ ଜଗେ ନାଶିଲି ଏ କରେ

କେତେ ଦେଶ କଲି ଶ୍ମଶାନମୟ

କେତେ ସୁଖସୌଧେ ଜାଳିଛି ଅନଳ

କେତେ ପ୍ରାଣେ ମୁହିଁ ଅଣିଛି ଭୟ !

କ୍ଷ ପିପାସା ଯେବେ ଲଭିଲି ଜନମ
କାଳେ କାଳେ ତାର ନ ହେଲା ଶାନ୍ତି
ସାରା ଜୀବନଟା ଅବୋଧ ବସିଲା
କ୍ଷ ଅସାର ଆଶା ମଧୁର ଭ୍ରାନ୍ତି ।
ଲୁବ୍ଧ ମୃଗ ପରି ମୁଗ୍ଧ ହୋଇ ମୁହିଁ
ଇନ୍ଦ୍ରିୟର ସୁଖେ କାଟିଲି କାଳ
ଜ୍ୱଳନ୍ତ ଅନଳେ ଇନ୍ଧନ ଯୋଗାଇ
ପାପେ ପୂର୍ଣ୍ଣ କଲି ଏହି ସଂସାର ।
ଧୂମକେତୁ ପରି ଦୀର୍ଘ ପୁଚ୍ଛ ଧରି
ବୁଣିଲି ମଡ଼କ ଯାତନାରାଜି
ଲୋକ-ଅଶ୍ରୁ-ରକ୍ତସ୍ରୋତେ ଭାସି ଭାସି
ଏ ଗିରିଚରଣେ ଆସିଛି ଆଜି ।
ଏ ଗିରିଚରଣେ ଏହି ନଦୀକୂଳେ
ଲଭିଲଣି ଆଜ ପରମ ଶିକ୍ଷା
ଏ କଳିଙ୍ଗ ଦେଶ ହେଲେ ମୋର ଗୁରୁ
ଦେଇଗଲେ ଏଥି ମୋ ଜୀବନ ଦୀକ୍ଷା ।
ଏହି ଦେଶେ ବସି ଏହି ନଦୀକୂଳେ
ଫେରାଇବି ମୋର ଜୀବନଗତି
ସାକ୍ଷୀ ରହ ମୋର ସର୍ବ ଦିଗପାଳ
ସାକ୍ଷୀ ରହ ମୋର ଜୀବନପତି !
ଶୁଭଯୋଗେ ସତେ କଳିଙ୍ଗବିଜୟେ
ବଳିଲା ମୋ ମନ ଟଳିଲା ବଳ
ଦେବଦେଶେ ଆସି ଦେବଅନୁଗ୍ରହେ
ଭୋଗିଲି ଏ କେଉଁ ତପସ୍ୟାଫଳ ।

ଏହୁ ତପଫଳ ଏହୁ ଧର୍ମବଳ
ଜୀବନର ମୋର ହେଉ ଭୂଷଣ
ସେହୁ ବଳେ ପ୍ରଭୁ ଘୁଞ୍ଚାଇଦଅ ହେ
ଲକ୍ଷ ଲକ୍ଷ ପ୍ରାଣିପ୍ରାଣକଷଣ ।”

ପ୍ରିୟୁ ପ୍ରତିବେଶି ଧଉଳ ପାହାଡ଼,
ତୁମ୍ଭ ମୁଖ ମୁହିଁ ଦେଖୁଛୁ କେତେ
ଗୌରବଶିଖରେ ଅନାଇଁ ଅନାଇଁ
କେତେ ଦିନ ମୋର ଯାଇଛୁ ବିତି ।
ସୁନ୍ଦର ମଧୁର ଗୋଧୂଳି-ଗଗନେ
ଦିନ କାମ ସାରି ଦିବସପତି
ସିନ୍ଦୁରକଳହସି ଖେଳାଇ ପଶ୍ଚିମେ
ଅସ୍ତାଚଳେ ବେଗେ କରନ୍ତି ଗତି ।
ଗୋପାଳ କୃଷକ ସଙ୍ଗେ ଧେନୁଦଳ
ଆବେଗ ହୃଦୟେ ଫେରନ୍ତି ଘରେ
ତିମିର-ବସନେ ଆବରି ଶ୍ରୀଅଙ୍ଗ
ସନ୍ଧ୍ୟାଦେବୀ ବିଶ୍ୱେ ଅସନ୍ତି ଖରେ ।
ମୁହିଁ ବସିଥାଏ ଧଉଳ ପାହାଡ଼,
ତବ ଶିରେ ଶୁଣେ ବିହଙ୍ଗଗୀତି
କାନେ ବାଜଯାଏ କେତେ ଯୁଗ ବାଣୀ
ବଢ଼ିଯାଏ ପ୍ରାଣେ ଅନନ୍ତ ପ୍ରୀତି ।

ଗୃଳଯାଏ ଅଗେ ଚକ୍ଷୁ ଝଲସାଇ
ପୁଣ୍ୟ ମହିମାର ଅକ୍ଷୟ ଛବି
ବ୍ୟାକୁଳ ପରାଣେ ଅନାଇଁ ଦେଖଇ
ବୁଡ଼ିଗଲେ ଧୀରେ ପ୍ରସ୍ଫୁଟ ରବି ।
ଏହିପରି ସିନା କଳଙ୍ଗ-ତପନ
ବୁଡ଼ିଗଲେ ଦିନେ ଦରିଆ ତୀରେ
ଏହିପରି ସିନା କଳଙ୍ଗବୀରତ୍ୱ
ଭାସିଗଲା କାଳ-ସାଗର-ନୀରେ ।
କେତେ କି ମହିମା କେତେ ଦୟା କ୍ଷମା
ଦରିଆ ଗରଭେ ଯାଇଛି ପଶି
ସାକ୍ଷୀ ତାର ପାଶେ ଚ଼ଦେବାଳୟ ବସି ·
ଦୂରେ ତାର ସାକ୍ଷୀ ତପନ ଶଶୀ ।
ଅସିଥିଲେ କି ହେ ସ୍ୱପନରେ ଭାସି
ସ୍ୱପନରେ ଖେଳି ଫେରିଲେ ଘରେ
ଏତେ ଉଚ୍ଚ ଅଶା ବାସନା କି ସତେ
ଦ'ଦିନେ ବଞ୍ଚିଶି ଦ'ଦିନେ ମରେ ।
ଯଶଃମନ୍ଦିରରେ ସାମନ୍ତ ବୋଲିଣ
ଭୂଲେ ଲଭିଥିଲେ ଗୌରବଟୀକା
ମହିମା-ଉଜ୍ଜ୍ୱଳ ସେ ବରବପୁ କି
ପଡ଼ିଗଲା ଶେଷ ହେଲା ସେ ଶିକ୍ଷା !
କେତେ ଜାତି ହାତ ଧରି ଅଗେ ଚଳି
ଅଗୁଆ ହୋଇଣ ରଖିଲେ ନାମ
ସତ୍ୟ ସାହସର ଜନମଭୂମିକୁ
ସତେ ମୋର ବିଧି ହୋଇଲେ ବାମ !

ରାଜା ରାଜଧାନୀ ପ୍ରାସାଦ ସରିଛ
ଭୁସିଗଲେ ସବେ ଦରିଆକୂଳେ
ଛାୟା ତାର କି ହେବ ଭୁସି ନ ବୁଲଇ
ଏବେ ହେଲେ ଶୂନ୍ୟେ ଧଉଳଚୂଳେ !
ଲିଙ୍ଗରାଜ ତୁଙ୍ଗ ମନ୍ଦିର ରହିଛି
ରହିଛି ତ ସେହି ଧଉଳ ଗିରି
ରହିଛି ଅନାଇଁ ଖଣ୍ଡଗିରି ଦରି
ନ ଗାଏ କି ମୁଖେ ସେ ଦିନ ଗୀତି ?
ନ କହେ କି ସେହୁ ହୃଦ ବିଦାରଣ
କଳିଙ୍ଗ ପୁରାଣ ମହିମା କଥା
ଅତୀତ କାଳର ଗୌରବ ବଖାଣି
ନ ଅଣେ କି ପ୍ରାଣେ ଦାରୁଣ ବ୍ୟଥା ?
ପ୍ରତି ଶିଳାଖଣ୍ଡେ ପ୍ରତି ଝାଙ୍ଗି ମୁଣ୍ଡେ
ନ ଅଛି କି ଗୁନ୍ଥା କୀରତିରାଜି ?
ଏତେ ଥାଇ ଥାଇ ଏତେ ଦେଖି ଦେଖି
ଏ ଦେଶ ସ୍ୱପନ ନ ଯାଏ ଭଜି !
କହ ତେବେ ମୋତେ ଧଉଳ ପାହାଡ଼,
କହ ଭଲ ବାରେ ମୋ ମୁଖ ଗୁହିଁ
ଧଉଳ ଦେଶରେ ସେ ଦିନ ଜୀବନ
ଅସିବ କି ଅଉ ଅସିବ ନାହିଁ ।

# ତ୍ରିବେଣୀତଟେ

ଶ୍ରୀ ପଦ୍ମଚରଣ ପଟ୍ଟନାୟକ, ବି. ଏଲ୍.

ବହୁ ଭାଗ୍ୟଫଳେ ଭାଇ, ତବ ଶୁଭ୍ର ନିମନ୍ତ୍ରଣେ
ଦେଖିଲି ତ୍ରିବେଣୀତୀର, କାଳେ କାଳେ ଥିବ ମନେ ।
ଅତୀତର ପୁଣ୍ୟସ୍ମୃତି-ପବିତ୍ରିତ ନଦୀତୀରେ
ଅତୀତ ଦେଶର ଛବି ଦେଖିଲି ତ୍ରିବେଣୀନୀରେ ।
ଜନ୍ମ ହେବା ମାତ୍ରେ ପୂର୍ବପୁରୁଷର ଛାୟା ଆସି
ଦେଖୁ ଦେଖୁ କି କୌଶଳେ ବେଗେ ମୋତେ ଦେଲା ଗ୍ରାସି ।
ଦେଖୁଥିଲି ଢଳଢଳ ତଟିନୀ ତରଙ୍ଗ ଖେଳ
ଧର୍ମପ୍ରାଣ ନରନାରୀ ଉଦ୍‌ବେଗ ମଧୁର ମେଳ ।
ସରଳ ବୈଷ୍ଣବ ଶିଶୁ କମନୀୟ କୃଷ୍ଣବେଶ
ଗଳେ ଗୁଞ୍ଜ ବନମାଳା, ପୃଷ୍ଠେ ବିଲମ୍ବିତ କେଶ ।
ମସ୍ତକେ ମୁକୁଟ, ଅଙ୍ଗେ କେଡେ ଶୋଭା ମନୋହର
ନୟନେ କଜ୍ଜ୍ୱଳ, ପୁଣି ଲଲାଟେ ସିନ୍ଦୂରଗାର ।
କଟିରେ ଘୁଙ୍ଗୁରମାଳ ରୁଣୁଝୁଣୁ ମଧୁସ୍ୱନ
ହସ ହସ ମୁଖ ଷଣେ କେଡେ ନବ ଉଚ୍ଛାଟନ ।
ଦେଖୁଥିଲି ସଦ୍ୟସ୍ନାତ ସରଳା କାମିନୀଦଳ
ପଟ୍ଟବସ୍ତ୍ର ପିନ୍ଧି ଧରି କରେ କେଡେ ପୂଜାଥାଳ,

ଦେବଦ୍ୱାରେ ଭକ୍ତ ହୋଇ ପ୍ରଣମି ଦେବତାପଦେ
ମାଗୁଥିଲେ କବା ବର କେତେ ଭକ୍ତଗଦଗଦେ ।
ଶୁଣୁଥିଲି ଶତ ଶତ ଭକ୍ତକର ଅଭିସ୍ୱର
ଦୂରଦେଶାଗତ କେତେ ଯାତ୍ରିଦଳ-କୋଳାହଳ ।
ଏ ସବୁରୁ କିଏ କାହିଁ ହରିନେଲା ମୋର ମନ
ଦେଖାଇଲା ଅଖି ଆଗେ କେତେ ଛବି ଅଗଣନ ।
ଯୁଗଯୁଗାନ୍ତର ଲଙ୍ଘି କେତେ ଦୂରେ ଗଲି ଚାଲି
କି ଦେଖିଲି କି ଶୁଣିଲି ଏବେ ମୁଁ ନ ପାରେଁ ଭାଳି ।

ନ ଅଣ ଲୋ ସ୍ମୃତି ଆଜ ସେସବୁ ମୋ ପାଶେ ଟାଣି
ନ ଶୁଣାଅ କାନେ ମୋର ଅତୀତ ଗୌରବବାଣୀ ।
ନ ଦେଖାଅ ନେତ୍ରେ ମୋର ଏ ଚିତ୍ର ଗୋଟି ଗୋଟି କରି
ମୁକୁନ୍ଦର ଶୌର୍ଯ୍ୟ ବୀର୍ଯ୍ୟ, ମୁକୁନ୍ଦ ଦେଶର ଶିରୀ ।
ମୁକୁନ୍ଦର ବାହୁବଳ, ଧର୍ମେ କର୍ମେ ଶୁଦ୍ଧମତି
ପ୍ରାଣପଣେ ଦେଶସେବା, ଅଦମ୍ୟ ସ୍ୱଜାତିପ୍ରୀତି ।
ଗୋହିରୀର ପୁଣ୍ୟକ୍ଷେତ୍ରେ ଦେବାପାଇଁ ଆତ୍ମବଳି
ବୀରଦର୍ପେ ନାଚି ନାଚି କିପରି ପଡ଼ିଲା ଚଳି ।
କିପରି ସେ ଦେଶ ଛାଡ଼ି ଅସିଲା ତ୍ରିବେଣୀତୀରେ
କିପରି ତା ଆଠକୁମ୍ଭା ପଡ଼ିଲା ଏ ନଦୀନୀରେ ।
କିପରି ସେ ପୋତିଥିଲା ଜୟସ୍ତମ୍ଭ ଏହି ଦେଶେ
କିପରି ହର୍ଯକ୍ଷସନେ ବୁଲୁଥିଲା ବୀରବେଶେ ।
କିପରି ସେ ପ୍ରଜାପୁଞ୍ଜେ ପାଳୁଥିଲା ପୁତ୍ର ପରି
କିପରି ତା ନାମ ଶୁଣି ଯାଉଥିଲା ଶତ୍ରୁ ଥରି ।
ସରିଛି ସେସବୁ ଆଜ, ଲାଗୁଛି ସ୍ୱପନ ସମ
ଅଛି ଦେଶ, ନାହିଁ ତହିଁ ମୁକୁନ୍ଦର ପରାକ୍ରମ ।

ମୁକୁନ୍ଦର ସିଂହାସନ ଗଲଣି ତ କାହିଁ ଚୂଲି
ଖଣ୍ଡ ମଧ୍ୟେ ନିଃସ୍ୱ ହୋଇ ରହିଛି ଦେଶଟା ଖାଲି ।
ସିଂହର ସଦନେ ଆଜି ରହିଲେ ଶୃଗାଳଦଳ
କେତେ ଦିନେ ହେଲେ ଅହା କେତେ କ୍ଲୀବ ହୀନବଳ ।
ନିଜ ଛାୟା ନିଜେ ଦେଖି ଭୟରେ ଯାଆନ୍ତି ଥରି
ହା ହା ମୁକୁନ୍ଦର ଦେଶ ହେଲା ଆଜି ଏତେ ସରି ।
ବହୁଛି ତ୍ରିବେଣୀ ଆଜି, ରହିଛି ରାଜାଙ୍କ ଘାଟ
କାହିଁ ସେ ରାଜାଙ୍କ ଦେଶ, କାହିଁ ବା ସେ ରାଜ୍ୟପାଟ ।

ବହୁଛି ତ୍ରିବେଣୀ ଆଜି, ରହିଛି ରାଜାଙ୍କ ଘାଟ
କାହିଁ ସେ ରାଜାଙ୍କ ଦେଶ, କାହିଁ ବା ସେ ରାଜ୍ୟପାଟ ?
ପୁଛିଲେ ଏ ପ୍ରଶ୍ନ ପ୍ରାଣୁ ଉଠେ ବାକ୍ୟ ବକ୍ଷ ଫାଟି
ଅନୁର୍ବର ହେବ ନାହିଁ ମୁକୁନ୍ଦଦେଶର ମାଟି ।
କ୍ଷୁଦ୍ର ମଞ୍ଜି ଉପୁଜାଏ ମହାଦ୍ରୁମ ଶତ ଶତ
ଦେଶଭକ୍ତ ସାଧୁରକ୍ତ ନୁହେଁ ଭସ୍ମେ ପରିଣତ ।
ବୀରରକ୍ତେ ବୀର ଗଢ଼ା କଥା ଅଛି କାଳେ କାଳେ
ବୀରର ଶ୍ମଶାନେ ବୀରଶିଶୁ ଖେଳେ ଏ ସଂସାରେ ।
କୀର୍ତ୍ତିଦେହ ଧୂଳି ହୋଇ ପଡ଼ିଅଛି ଏହି ଦେଶେ
ଗୌରବର ଆତ୍ମା ଆଜି ବୁଲେ ଦେଶ ଚାରିପାଶେ ।
ହାତ ଠାରି ନୀରବରେ ଡାକି କାନେ କହେ କଥା
"ଉଠ ଭାଇ, ଉଠ ଭାଇ, ନ କର ରେ ନତ ମଥା ।
ଗୌରବର ଧୂଳି ବୋଳି ଉଭା ହୁଅ ରାଜପଥେ
ଜୟଶ୍ରୀଭୂଷିତ ହୋଇ ବସ ପୁଣ୍ୟକୀର୍ତ୍ତିରଥେ ।
ଅତୀତକୁ ସାକ୍ଷୀ କରି ଗଢ଼ିଯାଅ ବର୍ତ୍ତମାନ
ଅନଙ୍ଗ ଯଯାତି ଦେଶ ନୁହେ ନୀଚ, ନୁହେ ସାନ ।

ବୀର କପିଳେନ୍ଦ୍ର ଯହିଁ କଲେ ଦୂରଦେଶ ଜୟ
ସେ ଦେଶ କି କେବେ ହେଲେ ହେବ ହୀନ, ହେବ ହେୟ ?
ମୁକୁନ୍ଦର ମୁକ୍ତ ଆତ୍ମା ଯାଇଛି ଯେ ଦେଶେ ଖେଳି
ସେ ଦେଶ ଲଲାଟେ ଲେଖା ବିଜୟବିଭୂତିଶିରୀ ।"
'ବୀରଦେଶେ ବୀର ଅଛି ଯାଇଛନ୍ତି ସିନା ଚଳି
ଅଛି ତ ହେ ରତ୍ନ ଖଣି, ଅଛି ତ ହେ ଗିରିଦରି ।
ଅଛି ତ ହେ ଶୈଳ ସିନ୍ଧୁ, ଅଛି ସିନ୍ଧୁ-ଗରଜନ
ଅଛି ସିନ୍ଧୁ-ବେଳାଭୂମି, ଅଛି ନଭେ ତାରାଗଣ ।
ନଗରେ ପ୍ରାନ୍ତରେ ଅଛି କେତେ ତୁଙ୍ଗ ଦେବାଳୟ
ରହିଛି କାନନଶ୍ରେଣୀ, ରହିଛି ମଧୁ ମଳୟ ।
ରହିଛି ପ୍ରକୃତିଦେବୀ, ହସୁଛି ତ ନିତି ନିତି
ଆତ୍ମପରଭେଦ ଭୁଲି ଡାକୁଛି ଅନନ୍ୟ ପ୍ରୀତି ।
ସମସ୍ତେ ତ ରହିଅଛି, କହ ଦେଖି କହ ଥରେ
କେତେ କାଳ ସେ ମହିମା ରହିଥିବ ଗୁପ୍ତତରେ ?
ସେ ଅତୀତ କେତେ କାଳ ବୁଲୁଥିବ ଶୂନ୍ୟ ଦେଶେ
ଭୂତ ପ୍ରେତ ପରି କେତେ କାୟାହୀନ ଛାୟାବେଶେ ?
କେବେ କାୟା ଧରି ଅଛି ମାୟାରୂପ ପରିହରି
ଜୀବନ ଯୌବନ ଦେବ ସ୍ୱଦେଶ ସର୍ବସ୍ୱେ ଭରି ?
ହସିବ କୁଟୀର ସୌଧ, ହସିବ ନଗର ପଲ୍ଲୀ
ହସିବେ ଆକାଶେ ପକ୍ଷୀ, ତଳେ ତରୁ ତୃଣ ବଲ୍ଲୀ ।
ଘରେ ଘରେ ବୀରଶିଶୁ ଖେଳିବେ ଆନନ୍ଦେ ଖେଳି
ଆଶା ପ୍ରୀତି ଆନନ୍ଦର ଲାଗିଯିବ ମଧୁମେଳି ।
ଗାଇବ ଗରବେ କବି କରେ ନବ ବୀଣା ଘେନି
"ଜୟ ମା ଜନମଭୂମି, ଜୟ ବୀରପ୍ରସବିନି ।"

# ଗ୍ରୀଷ୍ମ ଋତୁ

ଶ୍ରୀ ଗୋଲୋକଚନ୍ଦ୍ର ପ୍ରଧାନ

( ରାଗ—ସାମଗୁଜ୍ଜରୀ )

ପ୍ରମୋଦେ ରସାଇ ଋତୁକୁଳସାଇଁ ଚାଲେ ତେଜିବାରୁ ଧରା ଯେ
ମହାଖରତର କରମାଳକର ଅବନ ଦହିଲା ତ୍ୱରା ଯେ
ଝଞ୍ଜିଲା, କି ଅବା ଅନଳଗୁଣ୍ଡି ଯେ
ଅନିଳ ଅପିତ୍ୱ ପରାଗ୍ୟେ ତପତ, ରାବିଲା ସିନ୍ଦୁରମୃଣ୍ଡୀ ଯେ । ୧ ।

ଚଳଚଳ ବାମା ନୟନଜଳମା ଛଣି ମରୀଚିକା ଦଶେ ଯେ
ତପତ ଧରାରେ ପଥିକ ଖରାରେ ନାଚ ନାଚ ଦୁଃଖ କ୍ଳେଶେ ଯେ
ତଟିନୀ, ଅଛ କୃଶକଳେବରା ଯେ
ଦଶେ ଶିରାହୀନା ଭୂଷଣବିହୀନା ଯଥା ବିଧବା ଅଧୀରା ଯେ । ୨ ।

ହେଲା ଜନଙ୍କର ଚନ୍ଦ୍ରମା ଗୃହର ନୀରରେ ଆଦର ଅଛ ଯେ
ଥିଲାଜନେ ଭଳେ ଚନ୍ଦନ ମଣ୍ଡିଲେ ଅଙ୍ଗ କଲେ ତୃଷ୍ଣାମଛ ଯେ
ମଧୁରେ, ଫୁଟିଲେ କୁଟଜ ବନେ ଯେ
ଲଜ୍ଜାଶୀଳା ଧୀରା କୁଳବାଳା ପରା ମୋହିଲେ ମାନସ ଗୁଣେ ଯେ । ୩ ।

ବନେ ଦାବାନଳ ସଞ୍ଚରି ପ୍ରବଳ ଡରାଇଲା ବନଚର ଯେ
ଭୂଚର ଖେଚର ଜଳଚରଙ୍କର ଅତୁରତା ହେଲା ଧର ଯେ
ଶଙ୍କିଲେ, ଜଳଶାୟୀ କଲେ ଶିବେ ଯେ
କଞ୍ଚ ଅବା କେନ୍ଦ୍ର ଅରଣ୍ୟିଲେ ଯାଇ ପୁରନ୍ଦର ତୋଷ ଭାବେ ଯେ । ୪ ।

ଗ୍ରାମଦୂରପଥପ୍ରାନ୍ତେ କେହି ସତଜ୍ଞେଙ୍କ ଦେଲେ ଜଳଛତ୍ର ଯେ
ଶ୍ୟାମା ସୁରୁଭୂସି ଶୀତଗନ୍ଧ ବୋଲି ମୋହିଲେ ପ୍ରଣୟିଚିତ୍ତ ଯେ
ଚମ୍ପକ, ବାସେ କାନ୍ତ ଭୃଙ୍ଗ ଦଣେ ଯେ
ତରଣୀର ସ୍ନେହେ ତରଣୀ ବନ୍ଧେହେ ସବ ମଠ ରହେ ଶେଷେ ଯେ ।୫।

# ଯାତ୍ରୀ

ଶ୍ରୀ ହରିବନ୍ଧୁ ଶତପଥୀ

ହେ ଅନନ୍ତପଥଯାତ୍ରି ! ଯାଉଛୁ ତୁ କାହିଁ
କେତେ କାଳୁ ଅନନ୍ତର ଆଶା ହୃଦେ ଧରି
ଗୁଲିଅଛୁ, ସତେ ତାର ଅବସାନ ନାହିଁ
ଜୀବନର କିବା ଲକ୍ଷ୍ୟ ହୃଦେ ଅଛି ଭରି ?
ଭାବଛୁ କି କିଏ ତୋର ସୃଷ୍ଟିର କରତା
ଅପ୍ରପରିଚୟିଦାନେ ଅଟୁ କି ସମର୍ଥ
କିବା ପଥ ଅଛି ଅଜ ଜାଣୁ କି ନାରତା
ବୁଝାଇପାରିବୁ କିବା ଏ ଯାତ୍ରାର ଅର୍ଥ ?
ଜନ୍ମଜନ୍ମାନ୍ତରେ ପଥେ କେତେ ପାନ୍ଥଶାଳା
ଦେଖି ବିଶ୍ରମିବୁ ବୋଲି ଦଉଡ଼ୁ ତୁ ଖରେ
କାହିଁ ଶାନ୍ତ, କାହିଁ ସୁଖ, ସେହି ହୃଦଜ୍ୱାଳା
ନ ଲଭିଇ ଛଳେ ହେଲେ ସଂସାରଗହ୍ୱରେ ।

ଯାହା ରଙ୍ଗମଞ୍ଚେ ତୁହୁ ଧରି କେତେ ବେଶ  
ପଥିକର ଅଭିନୟ କରି ଯାଉ ରଙ୍ଗେ  
କାହାର ଇଙ୍ଗିତେ ପୁଣି ହୁଏ ସବୁ ଶେଷ  
ବୁଦ୍‌ବୁଦର ସମ ମିଶୁ କାଳ-ସିନ୍ଧୁ ସଙ୍ଗେ ।

କ୍ଷୁଦ୍ରବୁଦ୍ଧି ମାନବର ବୁଦ୍ଧି ଅଗୋଚର  
ତୋ ଯାହା ରହସ୍ୟ ଦ୍ୱାର ଦେବେ ନାହିଁ ଜଣା  
ଜାଣେ ଏକା ଜଣେ ସତ୍ୟ ଶିବ ସେ ସୁନ୍ଦର  
ତା ବିନା ଅପର ଜନ ହେବ ବାଟ ବଣା ।

କାହିଁ ଲୁଚୁଇଛୁ ଦେଖା ପାଏଁସୁ ଗଣ୍ଠିର  
ଯା ଯେନ ତୁ ପାସୋରଛୁ ଭବସ୍ରେକଶୋଷ  
ଥାଅନ୍ତା କି ଶକ୍ତି ମୋର ତୋ ଅନ୍ତର ଚିର  
ଦେଖନ୍ତି ସମ୍ବଳ, ତେବେ ପାନ୍ତ ପରିତୋଷ ।

କାହିଁ କିଏ ସେ ଡାକଇ ତୋତେ ହାତ ଠାରି  
କାହାପାଇଁ ପ୍ରାଣ ତୋର ହୁଏ ଉତ୍ତରଳ।  
ରୋମାଞ୍ଚ ଜାଗଇ ଅଙ୍ଗେ କାହା କଥା ସ୍ମରି  
ବର୍ଷାବାରି ସମ କପାଁ ନେତ୍ର ଛଳଛଳ ?

କାହିଁ କେଉଁ ପଥେ ଯିବୁ, ହୋଇଛୁ ନିର୍ଭୟ  
ଅମା ଅନ୍ଧକାରେ ତୋତେ ନ ମାଡ଼େ କି ଡର  
ଜାଣିଛୁ ଶୁଣିଛୁ ପରା କା ବାଣୀ ଅଭୟ  
ନହୁବା କେସନ ହୃଦ ହୁଅନ୍ତା ପଥର ?

ମୋତେ ତ ନ ଦିଶେ କିଛୁ ଅଖି ଥାଇ ଅନ୍ଧ  
ଚଉଦିଗେ କୁହେଳିକା ଅସ୍ପଷ୍ଟ ଭେଦ  
ଦେଇ ଯା ଅମୃତ ଦୃଷ୍ଟି, ବାରି ଭଲ ମନ୍ଦ  
ଅସୁ ଯା ଅସିବ ନଷ୍ଟେ ପକାଇବ ଛେଦ ।

ନାହିଁ ଅନୁଭୂତି ମୋର ଭବେ ହେ ପଥିକ
କାହିଁକି ସାହସେ ଭବେ ଯିବ ପଥ ବାହି
ଶୁଣାଅ ଉଚ୍ଛ୍ୱାସଅଶ୍ରୁ-ଗାଥା ସମଧିକ
ମାୟାମରୀଚିକାହସ୍ତ ଲଭିବି ମୁଁ ତାହି ।

କେତେ ଦୁଃଖକଶାଘାତ ସୁଖପ୍ରତିଚ୍ଛବି
ଉତ୍ଥାନପତନ କେତେ ମିଳନମାଧୁରୀ
ଦେଖିଥିବୁ, ଜାଣିଥିବୁ ତୋର ଭାଗ୍ୟରବି
କେବେ ପୁଣି କାଳଚକ୍ର ଯାଇଥିବ ଘୂରି ।

ବିଷୟ-ବିଷମ-ବିଷେ ତନୁ ଥିବ ଘାରି
ଅମୃତ ଭ୍ରମେ ପିଇ କାମ ହଳାହଳ
ବୁଲିଥିବୁ ଶୂନ୍ୟହୃଦେ, କାହିଁ ଶାନ୍ତି ମାରି
ଝାମ୍ପି ନେଇଥିବ କାଳ ଅନଳସକଳ ।

କାମ କାମାନଳ ଯେବେ ଜଳି ହୃଦବନେ
ସୁନାର ଶରୀର କରିଥିବ ଛାରଖାର
କାହିଁ ଶାନ୍ତିବାରିଧାରାଅମୃତସିଞ୍ଚନେ
ଲଘୁ ହୋଇଥିବ କହ ହୃଦୟର ଭାର ?

କ୍ଲେଦ-କୁମ୍ଭୀପାକ ପଙ୍କେ ଭୁଲାଇ କାରତେ
ଓଟାରିଥିବଟି ତୋତେ ବଡ଼ିଶୀ ସମାନ
କି ମନ୍ତ୍ର ଉଚ୍ଚାରି ତହୁଁ ଗୃହକୁ ଟାଣେ ପଥେ
ଯେ ଦୀକ୍ଷା କି ଅଞ୍ଜନେ ନ କରିବୁ ଦାନ ?

ସଂସାରର ଶତ ଶତ ବ୍ୟୂହଚକ୍ର ଏଡ଼ି
ଶାଶ୍ୱତ କମ୍ୟମେ ଚିତ୍ତ ଅଭୀଷ୍ଟପୂରଣେ
ପଥହରା ସହଯାତ୍ରିଦଳେ କହ ଫେଡ଼ି
କି ସାଧନାବଳେ ଅଶ୍ରା ମିଳେ ଶ୍ରୀଚରଣେ ।

# ଆବାହନ

ଶ୍ରୀ ଉପେନ୍ଦ୍ରପ୍ରସାଦ ମହାନ୍ତି, ବି. ଏ., ଡି. ଇଡି.

ଦୃପ୍ତ କେଶରୀ-ଶିରେ ରକ୍ତ ଚରଣ ଥୋଇ
ଆସ ଦେବି, ଅବତରି ଆଲୀଙ୍ଗନ୍ଦନେ
ମଞ୍ଜୁ ମାଳତୀ ଭରି କୁଞ୍ଜ-କାନନ-ଢୋରି
ଶରତ-ଅଳଙ୍କୃତ ଏ ମର୍ତ୍ତ୍ୟଭୁବନେ
ଅମଳକମଳ କାନ୍ତି ପାଦପରଶେ
ମାଛି ଉଠୁ ଧରା ଆଜି ମହାଋତୁ ଦେବେ
ମନ୍ଦ ମରୁତ ଆଣି ଗନ୍ଧ କାନନ ବନୁ
ଦେଇଯାଉ ଭେଟି ତବ ପୂତ ଚରଣେ ।

ଭକ୍ତ ହୃଦୟ ତବ ରକ୍ତରାଜୀବପାଦ
ବରନେବ ମୃଦମନେ ତୃଣକୁଟୀରେ
ଶୂନ୍ୟ ଭବନ ତାର ପୂର୍ଣ୍ଣ ବିଭବଭରେ
ହସି ଉଠିବ ଗୋ ଦେବି, ଅଳ୍ପ ବୁଟଣେ
ସଜାଡ଼ି ରଖିଛି ସେ ଯେ ଧୂପ ଗୁଗ୍‌ଗୁଳ
ତୋଳି କରିଛି ସେ ସଜ ସୁରଭି ଫୁଲ
ତୁଷ୍ଟ ଆସ ଗୋ ଦେବି, ପୂର୍ଣ୍ଣ ହେଉ ଗୋ ତାର
ଚିରପୋଷିତ ବାସନା ଆଜି ଅଚିରେ ।

ସ୍ତବ୍ଧ ଫେନିଳ ନଦୀ—      ବକ୍ଷ-ଭୁବନ ଦଳି

ବହୁ ଅସ୍ତୁ ତରତରେ ତବ ତରଣୀ

ଶୁଭ୍ର କାଶ କୁସୁମ—      ଗୁଚ୍ଛ ଗୁମର ଗୁଳ

ବଉଳେଇ ମୁଦେ ତାହା ଶିର ଅବନୀ

ଗୁନ୍ଥିଛି ଶେଫାଳୀ ଦେବ, ବନ କାନନେ

ଝରିଯିବ ପ୍ରଣମି ସେ ତବ ଚରଣେ

ମଞ୍ଜୁ ମରାଳମାଳା      ଗୁଞ୍ଜନ ଖେଳ ରତ

ଗୁନ୍ଥିଛନ୍ତି ଗଳା ଠେକି ତବ ସରଣୀ ।

ଖିନ୍ନ-ହୃଦୟ-ଡୋରେ      ବର୍ଣ୍ଣବିଭବ ଗୁନ୍ଥି

ଅଣିଛୁ ଭେଟିବ କବି ତବ ଚରଣେ

ତର୍ପଣ ସାରି ଦ୍ୱିଜ      ବିପ୍ର ଆସିଛି ଧାଇଁ

କୁଶ କମଣ୍ଡଳୁ ଧରି ତବ ପୂଜନେ

ଧନୀ ଗୋ ଅଣିଛି ସାଜି ରତନରାଜି

ଭେଟିବ ଅମଳ ତବ ଚରଣେ ଆଜି

ଦୁଃଖୀ ଅଣିଛି ତାର      ଅଶ୍ରୁ-ମୁକୁତା-ହାର

ନିଜ ଯାହା ଗୁନ୍ଥେ ବସି ଦୀନ ଭବନେ ।

ସୁପ୍ତ ଯେ ଆଜି ଦେବ,      ଜାଗ୍ରତ କର ହସି

ଜଡ଼ ରନ୍ଧ୍ର ଧରିଦେହେ ଶ୍ୟାମଳ ଶାଢ଼ୀ .

ନନ୍ଦନ ହେଉ ମରୁ      ଚନ୍ଦନ ଯେତେ ତରୁ

ସୁନା ହୋଇଯାଉ ଆଜି ଯେତେକ ମାଟି

ଆସ ଆସ ବନ୍ଦେ ଏବେ ବିଶ୍ୱଜନନୀ,

ଆସ ଆସ ଦାନବଘ୍ନି କରୁଣାଖଣି

ମଣ୍ଡିତ କରି ଆଜି      ମହାନ ମେଢ଼ ତବ

ଥୋଇଅଛୁଁ ଦେଖ କରି କି ପରିପାଟୀ ।

# ଯକ୍ଷର ମେଘ ସମ୍ବୋଧନ

ଶ୍ରୀ ଉପେନ୍ଦ୍ରପ୍ରସାଦ ମହାନ୍ତି, ବି. ଏ., ଓ. ଇଓ.

ହେ ନବ ଶାରଦ କଳା-କୋବଳ-ବରଣ
ଏ ଗାଳ କଦ୍ରେଳ ଦେଶେ ଦେଲ ଦରଶନ
କି ମନମୋହନ ବେଶେ କି ନବ ଛନ୍ଦକେ
ଚପଳା ନିମେଷ ଚଣ୍ଡ ହରିଲ କ୍ଷଣକେ
ଖଣ୍ଡିଲ ମାନସ ମୋର, ଦେଖି ଆଜ ତବ
ମୋହନ ମୂରତି ଘନ, କି ଗୁପ୍ତ ଗରବ
ଉଠଇ ଉଚ୍ଛ୍ୱସି ହୃଦେ, ଜାଣିଲି ନିକର
ମହାପ୍ରାଣ ତୁମ୍ଭେ ସିନା, ଅନ୍ତର ତୁମ୍ଭର
ନିକର ଅମିୟଭରି କରୁଣା-କୋମଳ
ଦରଶନ ମାତ୍ରେ ଯାର ପିରତି ବିମଳ
ଉଠଇ ଉଛୁଳ ହୃଦେ ହେ ବନ୍ଧୁ ରମଣ,
ସେହୁ ସିନା ମହାପ୍ରାଣ ଦୀନ-ଦୁଃଖି-ଧନ ।
ନ ହେଲେ କି ଏହା ନିଜେ ପବନ ଦେବତା
ପୂଜନ୍ତି ଯାହାକୁ ନିତି ତରୁ ଗୁଳ୍ମ ଲତା
କୁସୁମ ସୁରଭି ଦାନେ ହେ ନବ ଜଳଦ,
ଗ୍ରହିଥାନ୍ତେ ମୃଦୁଭରେ ସାରଥିର ପଦ
ତବ ମହାଶୂନ୍ୟ ରଥେ, ନୋହିଲେ କି ଭଲା
କନକହାସିନୀ ନବୋନ୍ମାଦିନୀ ଚପଳା
ବରିଥାନ୍ତେ ପତି କରି, ନୋହିଲେ କି ଘନ,
ଧୂସର ବଳାକାମାଳା ମାଳତୀ-ବରଣ

ଝଟଣି ଗୃହେଣ ଲୁପେ ଚରଣେ ଭ୍ରମର
ଚାକ୍ରୁଥାନ୍ତେ ସ୍ତୁତିଗୀତ, ନ ହେଲେ ଅବର
ଗୃତଙ୍କ ଗୃତଙ୍କବଧୂ କରୁଣ କଣ୍ଠସ୍ୱନେ
କଣ୍ଢାଇଂ ସୁହାର ତବ ଅମଳ ଚରଣେ
ରଖନ୍ତେ ଜୀବନ ବାନ୍ଧି, ଗୁଣ ରସେ ପର୍
ଗୁଣୀ ବଣେ ଥାଏ ସଦା ପ୍ରବୀଣ ଗୁଣର
ମଧୁ ଥାଏ ବୋଲି ପିନା ନବୀନ ସୁମନେ
ରସଇ ରସିକ ଅଳି ବିମୋହିତମନେ ।
ହେ ଗୁଣି ! ହେ ଗୀନନାଥ ! ହେ ଦିବ୍ୟବରଣ
ହେ ଗୁରୁଚପଳାଗ୍ରଣୀ-ହୃଦୟ-ଚନ୍ଦନ !
ହେ ଗୀରନାୟକ ! ଶରମଙ୍ଗଳସଦନ !
ହେ ବିଶ୍ୱବରେଣ୍ୟ ଦେବ ! ଜଗତଶରଣ୍ୟ !
ଘେନ ଅଜି ଘେନ ମୁଦେ ପବିତ୍ର ଚରଣେ
ବିରହ-ବିରହ-ଭେଟି ଏ ଅଷାଢ଼ ବନେ ।
କୁଟଜ କୁସୁମପୁଞ୍ଜ ରଜତ-ଧବଳ
ଫୁଟିଥିଲା, ତାଳିଥିଲା ଏ ନେତ୍ରଯୁଗଳ
ସ୍ନେହଙ୍କ-ମୁକୁତା-ବିନ୍ଦୁ, ମଞ୍ଜୁଳ ଏ ହାର
ଗୁନ୍ଥିଅଛି, ତାହା ଦେଇ ଘେନ ଉପହାର ।

# ମହାନଦୀରେ ଜ୍ୟୋତ୍ସ୍ନା-ବିହାର

ଡକ୍ଟର ମାୟାଧର ମାନସିଂହ, ଏମ୍. ଏ.

ଶିଳାଗୃହ-ଅନ୍ଧକାରବାସୀ ମୁଁ ଜନନି,
ଧରଣି, ନ ଥିଲି ଜାଣି ଅଛି ଏତେ ତୋ ପୁରେ
ଏମନ୍ତ ରୂପର ଲୀଳା, ନ ବାହୁଁ ତରଣୀ
ଅଛି ଏ ଜ୍ୟୋତ୍ସ୍ନାରେ ନୀଳ ମହାନଦୀପୂରେ ।

ଅହା କି ବିପୁଳ ଶୋଭା ଭାସେ ଆଖି ଆଗେ
କେମନ୍ତେ ବର୍ଣ୍ଣିବି ମୋର ମୁଗ୍ଧ ଅନୁଭବ
ଚକ୍ଷୁ ମୋର ଅନ୍ଧ ହୁଏ ଜ୍ୟୋଛନା-ପରାଗେ
ବାଣୀ ମୋର ନାହିଁ ଫୁଟେ, ମାନ ପରାଭବ ।

ଧବଳ ଉତ୍ତରୀ ସମ ରଜନୀ-ବଧୂର
ଜ୍ୟୋଛନା ବ୍ୟାପିଛି ଦୂର ଦିଗନ୍ତକୁ ଲାଗି,
ଝଲେ ତାର ଏ ଧରଣୀ, ପ୍ରକୃତି ମଧୁର
ହୋଇଛି ମଧୁରତର ତା ପରଶେ ଜାଗି ।

ଆକାଶର ଖଣ୍ଡ ସମ ମହାନଦୀ-ବାରି
ଚନ୍ଦ୍ରିକା-ଚୁମ୍ବନ ପାଇ ଧବଳ-ଚପଳ,
ତରଳ ମୁକୁର ଅବା ଦେଇଛି କେ ପାରି,
ଦେଖିବେ ବଦନ ନଭ-ସୀମନ୍ତିନୀଦଳ ।

ଦୁଇ କୂଳେ ବୃକ୍ଷରେଖା ଜ୍ୟୋଛନାଧଉତ
ଝିଣ୍ଡୁର ଅଳେକେ ଧର ତନ୍ଦ୍ରାଳସ ଶିର
ସ୍ୱପ୍ନ-ପୁଷ୍ପ କରେ ସୃଷ୍ଟି । ଅଳସ ମରୁତ
ଜ୍ୟୋଛନା-ମଦସ୍ୱମତ୍ତ ବହେ ଥିର ଥିର ।

ଅଙ୍ଗେ ଯେନ ମନ୍ଦାନଦୀ-ଶୀକର ନିକ୍ଷେପ
ଦୂରେ ଓ ନିକଟେ ଦିଶେ ନଦୀ ପଠା ଶତ-
ଶରବଣ ଶ୍ୟାମଚ୍ଛବି; ଦୀର୍ଘୀକୃତ ବେକ
ବିରହୀ ଚକୋର ଯହିଁ କାନ୍ଦେ ଅବିରତ ।

ଦୂରବାହୀ ନାଉରିର ସରଳ ସଙ୍ଗୀତ
ପବନେ ଆସଇ ଭାସି ନଦୀବକ୍ଷପରେ,
କ୍ଷେପଣୀ ଆଘାତେ ଦେଖ ଚନ୍ଦ୍ରିକାରଞ୍ଜିତ—
ନଦୀବାରି, ଲକ୍ଷ ରୌପ୍ୟପୁଷ୍ପ ସୃଷ୍ଟି କରେ ।

ପଶ୍ଚାତେ ପ୍ରସାରଶୀଳ ଶୁଭ୍ର ବାଲୁଶ୍ରେଣି
ମିଶଇ ଆକାଶତଳେ; ସମ୍ମୁଖେ ମୋହର
ଗମ୍ଭୀର ସୁନ୍ଦର ଗିରିମାଳା ଉଠେ ଭାସି
ଚନ୍ଦ୍ରିକାଚନ୍ଦନେ ଚର୍ଚ୍ଚି ନୀଳ କଳେବର ।

ଉଠିଛି ଶିଖରମାଳା-ପଶ୍ଚାତୁଁ ଆକାଶ
ସନ୍ନ୍ୟାସିନୀ-ମୁଖ ସମ ପ୍ରଶାନ୍ତ ଧବଳ,
ତା ତଳେ ରଜନୀ-ବଧୂ ଚନ୍ଦ୍ରିକାର ବାସ
ଉଡ଼ାଇ ଧରଣୀ କରେ ପରଶେ ଉତଳ

ଏ ବିରାଟ ଶବ୍ଦଗୃହେ ଅତିଥି ମୁଁ ଦୀନ
ମୁଗ୍ଧ ସମ ରହେ ଗୃହଁ ମହାମହିମାରେ,
ଭାବଇ ବା ହୋଇ ଏହି ଜ୍ୟୋତ୍ସ୍ନାରେ ମ୍ଳାନ
ଭେଗନ୍ତ ଯେ ସୁଧା ଝରେ ଅଛି ଏତେ ଧାରେ ।

ହାୟ ଯେ ଉତ୍କଳଭୂମି ପ୍ରକୃତି-ସୁନ୍ଦର,
ମନ୍ଦାକିନୀ ସମ ନଦୀ, ମାରକତ ଗିରି,
କାନନେ, ବେଦାରେ ଲକ୍ଷ ଶୋଭାର ବହର
ଥାଉଁ ତୋର, କହ କାହିଁ ଏତେ ହତଶ୍ରୀ ?

ଏ ସ୍ୱର୍ଗ ସୁଷମା ଯାର, କରିବ ବିଶ୍ୱାସ
କେମନ୍ତେ କହ ଯେ ତାର ଅନ୍ତର ଅଭାବ ?
ସୁରା ସମ ମୁଗ୍ଧ କରେ ମୋରେ ଯା ନିଃଶ୍ୱାସ,
ତା ଦେହେ ସମ୍ଭବେ କାହୁଁ ଦୁର୍ଦ୍ଦିନ-ପ୍ରଭାବ ?

କାନନ ଶ୍ୟାମଳ-ବାସ, ଶିଖରୀ ମୁକୁଟ,
ଚରଣ ଚୁମ୍ବଇ ମହାସାଗରଲହରୀ,
ଏ ବେଶେ ହୁଅଇ ଯାର ମହିମା ପ୍ରକଟ,
କେମନ୍ତେ ଭାବିବି ତାରେ ଅଭିଶପ୍ତା କରି ?

ଅଛି ତୋର ଇତିହାସ-ସାକ୍ଷୀ ଏ ତଟିନୀ—
ଜଳେ ମୋ ତରଣୀ ଯେବେ ଭାସିଯାଏ ଧୀରେ,
ଜନନି, ଗୌରବ ତୋର କଳ୍ପନା-ସଙ୍ଗିନୀ
ଗୋଟି ଗୋଟି ଦ୍ରୁତେ କାଢ଼ି ଦିଏ ମୋ ସ୍ମୃତିରେ ।

ସେ ଦିନ ତୋ ଗିରି ସଙ୍ଗେ, ତୋର ଗଜପତି
ତୋଳିଲା ମୂର୍ଦ୍ଧାରେ ତାର ଦୁର୍ଗ ଅଭ୍ରଂକଷ,
ତୋହର ଏ ନଦୀ ସମ ମହା ନରପତି
ହୃଦରେ ଉଦାର କରି ଜଣି ନେଲା ଯଶ ।

ସେ ରାଜା ଯାଇଛି ଚୂଲି, ଦୁର୍ଗ ତାର ନାହିଁ,
ତା ସଙ୍ଗେ ଯାଇଛି ପୁଣି ସେ ବୀରହୃଦୟ,
ତୋହର ଅତୀତ ମା ଗୋ ଅଛି ଥାଇ ଥାଇ
କରେ କ୍ରୂର ପରିହାସ, ଘୋର ବ୍ୟଥାମୟ !

ତରଣୀ ଚଳାଇ ମୋର ବାରବାଟୀ ତଳେ
ରହ ରେ ନାଉରି, ଦଣ୍ଡେ ଉଠୁ ଏଥି ତଟି,
ମଥା ମୋ ଲଗାଇ ପୂତ ସୋପାନ-ପ୍ରସ୍ତରେ
ଦିଏଁ ଅପଦାର୍ଥ-ପ୍ରାଣେ କୃତକୃତ୍ୟ କରି ।

ସେ ଦିନ ଏ ଶିଳାପରେ ଅବଗାହେ ଆସି
ସୁକୁମାରୀ ରାଜବାଳା ଅଙ୍କିଥିବ ତାର
ଲାକ୍ଷାରକ୍ତ ପଦଛବି କରି ମତ୍ତକାଶୀ
କଠିଣ ପାଷାଣଦେହେ ଅନନ୍ତ ସଂସାର ।

ସେ ଦିନ ସଜନୀମେଳେ ରୂପସୀ ମହିଷୀ
ଏକ କରେ ଦୂର୍ବାକ୍ଷତ, ଶଙ୍ଖ ଆନ କରେ
ବିଜୟୀ ପୂଜରେ ଶିରେ ମଙ୍ଗଳ ଆଶିଷି
ବନ୍ଦି ନେଇଥିବେ ଗୃହେ ଏହି ଶିଳାପରେ ।

ସେ ଦିନ ଏ ଶିଳାପରେ ନାଗରିକା ଶତ
ହରିଦ୍ରା ପ୍ରଲେପ ରଞ୍ଜି କନକ ବଦନ
ବନ୍ଦୁଥିବେ ଶଙ୍ଖ ବାଇ ରଜାର ବୋଇତ
କରିଛ ଯେ ଯବଦ୍ୱୀପୁଁ ମୁକ୍ତା ଆନୟନ ।

ସେ ଦିନ ଏ ଶିଳାପରେ ନଗର-ଜନନୀ
ଏକନେ ପଠାଇ ପୋତେ ସନ୍ତାନେ ସମରେ
ରୁନ୍ଧିଥିବେ ଦୂର ଦିଗେ, ସେ ବୀରରମଣୀ
ଲୁଚାଇ ଆଖିର ଲୁହ ଅପମାନ-ଡରେ ।

ସେ ଦିନ କାହିଁ ଗୋ ଶିଳା ? ଏ ଦୁର୍ଗର ଛାୟା
ପଡ଼ି ଏ ତଟିନୀକୂଳେ, ଚକ୍ରୋର୍ମି-ଚକ୍ରୋରେ
ଅଣେ ଯେବେ ନିଶା-ସ୍ୱପ୍ନ । ଜୀବନର ମାୟା
ଏ ଜାତି ନ ଥିଲା ଜାଣି ବିପତ୍ତିର କୋଳେ !

ଚିରଦିନ ପାଇଁ ସେ କି ଯାଇଛନ୍ତି ଚାଲି,
ନ ଫେରିବେ ରଜା ରାଣୀ, ନ ଫେରିବେ ବୀରେ,
ବୋଇତ ବନ୍ଦାଣ ଲାଗି ଏ ତଟିନୀ ବାଲି
ନାଗରିକାପଦପ୍ରାନ୍ତ ନ ଚୁମ୍ବିବ ଧୀରେ ?

ଦୁର୍ଗ ଅଉ ଉଠିବନି ? ରଜାର ବୋଇତ
ନ ଫେରିବ ମୁକ୍ତା ଧରି ଏ ତଟିନୀ ବାନ୍ଧୁ,
ନଗରର ବଧୂ ଯେତେ ମଙ୍ଗଳ ସଙ୍ଗୀତ
ନ ବନ୍ଦିବେ ତାରେ କେବେ ମଧୁ କଣ୍ଠେ ଗାଇ ?

ସେ ସୌଭାଗ୍ୟ ଶେଷେ ହାୟ, ଏ କାତର ଶେଷ
ନ ବଳ୍ପ ବିଧାତା କହିଁ ? ସେ ଗୌରବ ପରେ
ବଞ୍ଚିବା ଧରି ଏ ଖାଲି କଙ୍କାଳ ବିଶେଷ
ବିଶ୍ୱ ଅଗ୍ରେ, ମରଣରୁ ଶତ ଗୁଣେ ବଳେ ।

ଏମନ୍ତ ଜ୍ୟୋଛନାସ୍ନିତ ସେ ଦିନ ଏ ସ୍ଥଳୀ
କି ଶୋଭା ଧରିଛି ଅହୋ କଳ୍ପନାସଜନି,
କହ ମତେ । ଶତ ଶତ ନାଗରିକେ ତରୀ
ବାହି କେଳୀ କରୁଥିବେ ମୁଖରି ରଜନୀ ।

ନୃପତିର ଗଜଦନ୍ତତରୀ ଥିବ ଅଗ୍ରେ,
ମୁଖରି ଗାୟିକାକଣ୍ଠେ, ମୃଗାଙ୍କେ ଜଡିଲା;
ନୃପତି-କୁଣ୍ଡଳ-ମଣି ଚନ୍ଦ୍ରିକାର ରାଗେ
ଝଲସେ, କମଳ କଣ୍ଠେ କୁସୁମର ହାର ।

ରାଜତରୀ ପାଶେ, ପଛେ, ଶତ ତରୀ ବାହି
ଚଳନ୍ତି ନଗରଜନେ ବିଳାସକୁଶଳ
ମୁଖରି କରି ଏ ନଦୀ ଜଳେ ଗୀତ ଗାଇ,
ଜଦ୍ଧାମେ କ୍ଷେପଣେ କରି ଅକୂଳ ଏ ଜଳ ।

ଊର୍ଦ୍ଧ୍ୱେ ତେଣେ ଚନ୍ଦ୍ରଶାଳାପୁରେ ରାଜରାଣୀ
ସ୍ୱର୍ଣ୍ଣଦୀପ ପଛେ ରହି ବାତାୟନ-ମୁଖୀ
ଦେଖନ୍ତି ଏ ମହାଲୀଳା, ଫୁଟେ ନାହିଁ ବାଣୀ,
ବଦନେ ଅପେ କି ଭାଷା ପ୍ରାଣ ହୋଇଲେ ସୁଖୀ ?

ଅନ କକ୍ଷେ ରାଜବଧୂ କୋମଳା କେଶରୀ
ସୁନ୍ଦରୀ ସଜନୀ ମେଳେ ଧରି ଫୁଲହାର
ଦେଖନ୍ତ ଚନ୍ଦ୍ରମାଶୋଭା ଚନ୍ଦ୍ର-ମୁଖ ଟେକି,
ଏ କାଳେ ମିଳନ୍ତେ ପାଶେ ନୃପତିକୁମାର ।

ତୀରେ ବାଦ୍ୟ-ନହବତ, କମ୍ପଇ ଧରଣୀ,
ସେ ପାର ପର୍ବତମାଳା ଦିଏ ପ୍ରହରି,
ମନ୍ଦ୍ର ଉଠେ ଦୁର୍ଗକକ୍ଷ, ରାଜାର ତରଣୀ
ନାଚୁଏ ଉଲ୍ଲାସେ ନୀଳ ମହାନଦୀନୀର ।

ସେ ଦିନ ମୁଁ ଥାଆନ୍ତି କି ରାଜନଗହଣେ,
ବିଧାତା, ହୃଦୟ ଭରି ଗାଇଥାନ୍ତି ଗୀତ,
ଗୁଣଗ୍ରାହୀ ରାଜା ମୋର ରତ୍ନବିତରଣେ
ତୋଷି କି ନ ଥାନ୍ତେ ଏଇ ଦରିଦ୍ରର ଚିତ୍ତ ?

ଫେରିବା କହୁଛ ବନ୍ଧୁ, ପୁଣି ଅନ୍ଧକାରେ ?
ଫେରିବାକୁ ହେବ ସତେ ? ହାୟ ଏ ଜୀବନ
ଅବସର ନାହିଁ ମିଳେ କ୍ଷଣେ ଭୁଲିବାରେ
ଜୀବନର ହାହାକାର, ପ୍ରାଣର ଦହନ ।

ଚନ୍ଦ୍ରମା ଉଠିଛି ଊର୍ଦ୍ଧ୍ୱେ; ବିଶ୍ରାନ୍ତ ଧରଣୀ
ନୀରବ, ନିସ୍ତବ୍ଧ, ଶାନ୍ତ । ମହାନଦୀଜଳ
କ୍ଲାନ୍ତ ଶିଶୁ ସମ ଶାନ୍ତ । ଉଜ୍ଜ୍ୱଳ ରଜନୀ
ଘଷ ପାତ ଅବରିଛି ନଭ ଜଳ ସ୍ଥଳ ।

ଏ ମହାଗୌରବ କ୍ଷଣେ, ଏ ଜ୍ୟୋତ୍ସ୍ନା ତଳେ
ମୁଗ୍ଧ ମୁଁ ଅନାଇଁ ଏହି ବିପୁଳ ଶୋଭିରେ,
ଅନୁଭବେ ଅହା କାର ସ୍ପର୍ଶ ଏ ଅନ୍ତରେ
ବିଚନ୍ତୁ ଅତୀତ, ମୁହିଁ ପ୍ରଣମେ ତାହାରେ ।

ସେ ଯେ ସତ୍ୟ, ଶିବ ସେହି, ଏକା ସେ ସୁନ୍ଦର,
ଭୁମା ସେ ରହିଛି ପୂରି ରେଣୁ ରେଣୁ ଭେଦି,
ଅନନ୍ତ ଲୀଳାର ହେତୁ, ଅସୀମ ହୃଦର
କ୍ଷଣକେ ସୃଜେ ସେ ତାର ମହାପୂଜାବେଦୀ ।

ବନ୍ଧୁ ହେ, ଚାଇଛ ଅଛ ଏ ଆକାଶତଳେ
ମୋ ଜାତି-ଅତୀତ-ସାକ୍ଷୀ ଏ ନଦୀପୁଳିନେ
ଜ୍ୟୋତ୍ସ୍ନାର ଏ ମହାଭୈରବ୍ୟେ; ଏ ତରଣୀପରେ
ଜାନୁ ପାତି ବନ୍ଧୁ, ତାରେ ଯେନ ହେ ଜୀବନେ ।

ଇଚ୍ଛା ମୋ, ହୃଅନ୍ତା ଏହି ନିର୍ମଳା ରଜନୀ
ଅସରି, ମୁଁ ଖୋଜୁଥାନ୍ତି ସର୍ବ ଶୁଭ୍ର ତାରେ
ଏ ସୁନ୍ଦର ଜ୍ୟୋତ୍ସ୍ନାତଳେ, ବାହି ଏ ତରଣୀ
ମୃତ୍ୟୁ ଯାଏ, ନ ଫେରି ସେ ମହାଅନ୍ଧକାରେ ।

# ଗୋପବନ୍ଧୁ

ଡକ୍ଟର ମାୟାଧର ମାନସିଂହ, ଏମ୍. ଏ.

ପ୍ରାଣ ରୂପେ ରୂପବାନ        ଜଣେ ମହାଜନେ
ସମ୍ମୁଖେ ଦେଖ ଗୋ ଏଇ      ପ୍ରଣମ ଚରଣେ ।
ପୁଣ୍ୟପ୍ରାଣ ଗୋପବନ୍ଧୁ        ଉତ୍କଳ ଦେଶର
ମୁକୁଟବିହୀନ ରଜା;        ଦୀନ ଦରିଦ୍ରର
ପ୍ରକୃତ ପରମ ବନ୍ଧୁ,        • ଦୀନ ଦୁଃଖୀ ପାଇଁ
ନୟନୁଁ ହୃଦୟଦ୍ରାକ୍ଷା        ଶୋଣିତ ବୁହାଇ
କଏ ଅଜ ତାଙ୍କ ପାଶେ      ଦୁଃଖ ଦୁର୍ଦ୍ଦିନରେ
ଅଙ୍କ ଧରି ହେବ ଠିଆ,       କୋମଳ ବାକ୍ୟରେ
ଭୁଞ୍ଜାଇବ ନୂଭ୍ୟଶୁରେ ?      ଏ ଦେଶ କାନ୍ଦରେ
ପ୍ରାଣପୂର୍ଣ୍ଣ ସ୍ନେହ ଦେଇ       ନୟନର ନୀରେ
ତର୍ପଣ କରିବ କଏ ?         ଉତ୍କଳଜନନୀ
ହରାଇ ଏମନ୍ତ ଯୋଗ୍ୟ—   ପୁତ୍ର ଗୁଣମଣି
ହୋଇଅଛ ଅଶ୍ରୁ-ଭୂତୀ       କୋଟି ପୁତ୍ର ଥାଇଁ
ତାଙ୍କ ପରେ ଦରିଦ୍ରର       ଗତି ନାହିଁ ଅଜ ।

# ଗାନ୍ଧାରୀର ଆଶୀର୍ବାଦ

ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ, ବି. ଏ.

ଜନନୀର ପଦେ          ନତ କରି ଶିର
    ମାଗେ କୁରୁ-ଚୂଡ଼ାମଣି,
"ଶତ୍ରୁ ସହିତ          ଯବେ ଦଳ ଆସେ,
    ଭିକ୍ଷା ଦିଅ ଜନନି !
ଅସ୍ରଛବସ୍ଥାନ          କରି ଏ ଧରଣୀ
    ବିଜୟର ଟୀକା ବହି
ଫେରି ଆସେ ମାତ,          ଦିଅ ଗୋ ଆଶିଷ,
    କରଗତ କରି ମହୀ ।
ଶତେକ ପୁତ୍ର—          ଜନନୀ ତୁହି ମା,
    ଶ୍ରେଷ୍ଠ ଏ ଧରାତଳେ,
ତୋ ଆଦେଶେ ମାତ,          ଏ ତିନି ଭୁବନ
    ବାନ୍ଧି ପାରିବୁଁ ବଳେ ।"
ଶତେକ ପୁତ୍ର—          ଜନନୀ କହଇ
    କୋମଳ ମଧୁର ଗିର,
"ଅଭିଳାଷ ଯେବେ,          ରଣ-ପ୍ରାଙ୍ଗଣେ
    ଅବତର ଆରେ ବୀର !
କୁରୁମଣି ! ଘେନ          ଆଶିଷ ମୋହର
    ଜନନୀର ବରାଭୟ,
ଅକ୍ଷର ହେଉ          ପୁଣ୍ୟ ଜଗତେ,
    ଧର୍ମର ହେଉ ଜୟ !"

ହାୟ ରେ ଜନନୀ— ଦୁସ୍ଥା କି ନିଠୁର,
ଏ କି ଦେଲୁ ଆଶୀର୍ବାଦ ।
ଜନନୀର ମୁଖେ ଗୃହେଁ ଲୁଚୁଥାର,
ଗଣେ ସିଦ୍ଧ ପରମାଦ ।
ଶାନ୍ତ ମହିମା ଫେଣ୍ଟିଛି ସେ ମୁଖେ
ଫୁଟିଛି ବନେଲ ହାସ,
ଶତେକ ପୁତ୍ର ସମରେ ପଠାଇ
ନ ଜାଗେ ବେଦନା ହ୍ରାସ ।
ନୟନର କୋଣେ ନ ଜାଗେ ଅଶ୍ରୁ
ବଦନେ କାନ୍ତି ଜ୍ୟୋତି,
ନବାକେ ବୀର ନରେଖେ ଏ ରୂପ,
ସ୍ତବ୍ଧ କାତର ମତି ।
ଆଶିଷ କି ଅବା ଅଭିଶାପ ଏ ଯେ
ପୁତ୍ର ନ ପାରେ ଜାଣି,
ସହଜ ଗଢରେ ବଚନ ଭୂଷଇ
ଧୃତରାଷ୍ଟ୍ରର ରାଣୀ—
"ଯାଅ ବୀର, ରଣେ ଧରଣୀ-ବକ୍ଷୁ
ପାପରାଶି ହେଉ କ୍ଷୟ,
ଅନ୍ତର ହେଉ ପୁଣ୍ୟ ଜଗତେ,
ଧର୍ମର ହେଉ ଜୟ ।
ଶତେକ ପୁତ୍ର ନୁହେଁ ଖାଲି ମୋର
ନୁହଇ ବସୁ ଜଣେ,
ସର୍ବେ ମୋହର ପ୍ରିୟ ସନ୍ତାନ
ଅଛି ଏ ଧରମ ରଣେ ।

ଭୀମ ଅର୍ଜ୍ଜୁନ ଧର୍ମନନ୍ଦନ
କେହି ନୁହେ ମୋର ଅନ,
ପାଣ୍ଡବସେନା କୁରୁସେନା ବୀର
ମୋଠାରେ ସବୁ ସମାନ ।
ବକ୍ଷୁ ନିଗାଡ଼ି ରୁଧିର ଦେଇ ଯେ
ଶତ ପୁତ୍ରରେ ଢାଳ,
ସବୁ ଜନନୀର ଅନ୍ତର ସେ କ
ନ ପାରେ ହୃଦୟେ ଭଲ ।
କୁରୁ-ଚୂଡ଼ାମଣି, ତୋ କଥନ ଯେତେ
ବେଦନା ଦେବ ରେ ପ୍ରାଣେ
ଅର୍ଜ୍ଜୁନବଧ ତତ୍ତ୍ୱ କ୍ରଣା ଶୋକ
ଦେବ ନାହିଁ ଭଲେ ଜାଣେ ।
ଯାଅ ବୀର, ରଣେ ଦେଉଛି ମେଲାଣି
ନ କର ଦୁଃଖ ଭୟ,
ଅକ୍ଷର ହେଉ ପୁଣ୍ୟ ଜଗତେ,
ଧର୍ମର ହେଉ ଜୟ ।”
ଧନ୍ୟ ଜନନୀ, ଧନ୍ୟ ସେ ହସ୍ତୀ,
ଗଠିତ କ ଉପାଦାନେ,
ବକ୍ଷେ ସହସ୍ର ସନ୍ତାନ ଲଗି
ବେଦନା ଗଳଇ ପ୍ରାଣେ ।
‘ଜୟୀ ହୁଅ’ ବୋଲି ଆପଣା ପୁତ୍ରେ
ମୁଖୁଁ ନ ଫୁଟିଲି ବାଣୀ
ଶତ ପୁତ୍ରର ଜନନୀ ହୋଇ
କୋଟି ବକ୍ଷର ରାଣୀ ।

ଶତ ଜନନୀର ଅନ୍ତରଜଳ
ଅର୍ଦ୍ଧ କରିଛ ପ୍ରାଣ,
ଶତ ପୁତ୍ରର ଜନନୀତ୍ୱେ
ତୁମ୍ଭେ ନାହିଁ ଅଭିମାନ । • .
ଭୀମ ଦୁଃଶାସନ ଜୟ ପରାଜୟ
ଗାନ୍ଧାରୀ ନାହିଁ ବୁଝେ
ସକଳ ସମାନ କରି ସେ ଦେଖଇ
ଅନ୍ଧ ଧର୍ମର ଯୁଝେ ।
ଗାନ୍ଧାରୀ ଦେଲ ଜନନୀ ପ୍ରାଣର
ସୁମହତ ପରିଚୟ
'ଅକ୍ଷର ହେଉ• ପୁଣ୍ୟ ଜଗତେ,
ଧର୍ମର ହେଉ ଜୟ ।'

# ବନ୍ୟା ବିପ୍ଳବ

ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ, ଏମ୍. ଏ., ଡି. ଇଡ଼.

ବନ୍ୟା ବନ୍ୟା ଚତୁର୍ଦ୍ଦିଗେ ପ୍ରଳୟ ପ୍ଲାବନ ।
ଲକ୍ଷ ଆର୍ତ୍ତକଣ୍ଠ ଡାକେ ରଖ ନାରାୟଣ ।
ଅନାଥଶରଣ ପ୍ରଭୁ, ଅଶ୍ରୁ ନିବେଦନ
ସକଳ ପ୍ରାର୍ଥନା ସତେ ହେବ ଅକାରଣ ?
ନିଷ୍ଫଳ କି ହେବ ଅସହାୟ ହାହାକାର
ନ ଫିଟିବ ରୁଦ୍ଧ ତବ ମନ୍ଦିରଦୁଆର ?
ମରଣ ପ୍ରଖର ସ୍ରୋତେ ଯିବେ ତେବେ ଭସି
ମୂକ ପଶୁ ସମ ଜନ ପ୍ରାଣୀ ରାଶି ରାଶି ?
ନୀରବେ ରହିବ ଗୃହି ମୂକ ଶିଳାସମ
ନିଷ୍ଠୁର ଏ ନୀରବତା ତୁମର ଧରମ ?
ନ ଟଳିବ ଟଳେ ତୁମ ନିଷ୍ଠୁର ବିଧାନ
ମଣିଷ ସକଳ ଦମ୍ଭ ଜ୍ଞାନ ଅଭିମାନ ?
ସୃଜନ ପ୍ରଳୟ ତବ ନିତ୍ୟ ମହୋତ୍ସବେ
ନିର୍ଭିକାରେ ତବ ଶଙ୍ଖ ନିର୍ଘୋଷେ ନୀରବେ ।

ଉଚ୍ଛେ ହସେ ଜଳସ୍ରୋତ, ପ୍ରବଳ ଗର୍ଜନ
ପ୍ରାଣଭିକ୍ଷା ଶୁଣି ବ୍ୟଙ୍ଗ କରଇ ମରଣ ।
ଉପହାସ କରେ ବାତ୍ୟା, ଭସିଯାଏ ତଟ
ମରଣଗରଭେ ତରୁ ଜୀର୍ଣ୍ଣ ପତ୍ର ପଟ ।

ନିଷ୍ଫଳ ବେଦନାଅଶ୍ରୁ ଆତ୍ମସମର୍ପଣ
ଆତ୍ମତ୍ୟାଗ ସେବା ନିଷ୍ଠା ଜୀବନମରଣ,
ପାପପୁଣ୍ୟ ସ୍ତୁତିନିନ୍ଦା ସବୁ ଏକାକାର
ଧର୍ମାଧର୍ମ ଭେଦବୁଦ୍ଧି ମାନସବିକାର,

ଲୁପ୍ତ କରି ବହିଯାଏ କାଳବନ୍ୟାସ୍ରୋତ
ମାନବର ପ୍ରାଣ ଯେସନ୍ତେ ଅସହାୟ ପୋତ !

ସବୁ ମିଥ୍ୟା ପରି ପ୍ରଭୁ, ହୁଏ ପରତୀତ
ଅଲଙ୍ଘ୍ୟ ବିଧାନ ତବ ! ମଙ୍ଗଳ ସଙ୍ଗୀତ—

ମୃତ୍ୟୁଗର୍ଭେ ରଣ ମାଗେ ପରାହତ ଜନ
ତୁମ ଦୀପାଲୋକେ କର ତିମିର ହରଣ !

ମରିବୁଁ ସକଳ ଜନ ମୂକ ପଶୁସମ ?
ଏ ସକଳ ହାହାକାର ଆତ୍ମନିବେଦନ

ନିଷ୍ଫଳ ହେବ କି ସତେ ପରାଣଦେବତା ?

ନ ଫିଟିବ ରୁଦ୍ଧ ଦ୍ୱାର ? ନ ବାଜିବ ବ୍ୟଥା ?
ମରିବୁଁ ନୀରବେ କଷ୍ଟେ ମରିବୁଁ ମାତର
ତୁମ୍ଭ ନାମ ନିଷ୍ଠୁରତା ଗାଇବୁଁ ନିକର
ଉଚ୍ଚ ସ୍ୱରେ କମ୍ପାଇ ଏ ଅସୀମ ଗଗନ
କରି ନମସ୍କାର ପ୍ରଭୁ, ବରିବୁଁ ମରଣ !

ଯାହାର ଇଚ୍ଛାରେ କୋଟି ଗ୍ରହ ଚନ୍ଦ୍ର ତାରା
କରନ୍ତି ବିହାର ଅବନତ ସୃଷ୍ଟି ସାରା,

'ମୁଷ୍ଟିମେୟ ନିଃସ୍ୱଜନ କିବା ଅମେ ଛାର ?
ନୀରବେ ବିଧାନ ତବ କରିବୁଁ ପ୍ରଚାର ।

ନଅ ଅଶ୍ରୁ ସୃଷ୍ଟିସ୍ଥିତିପ୍ରଳୟଙ୍କରତା ।
ଜଳସ୍ରୋତେ ଭାସିଯିବୁଁ ନାହିଁ ଛଟଲେ ବ୍ୟଥା ।

ଦୁର୍ଭେଦ୍ୟ ଏ ମରଣର ଅନ୍ଧକାର ଭେଦ
କରେ ଦଗ୍ଧ ଅଣାଦୀପ ଅସ କଏ ଖେଦ ?

ନିଃସ୍ୱର ଜୀବନଦାତା ? ମାନବସେବକ ?
ଦେବତାର ଦୂତ ଅବା ? ରଖ ପ୍ରାଣ ରଖ !

ଲକ୍ଷ ମୂକ ଜନଙ୍କର ଜଡ଼ିତ ଜୀବନ
ଧାଞ୍ଚ ଧନ ହେଲା ପିଣ୍ଡେ ଖଡ଼ ନାହିଁ ଅନ୍ନ !

ନୀରବେ ଗଲେଣି ଭାସି ମୂକ ପଶୁ ଯେତେ
କଉନ କଳନ୍ଦା କେନ୍ଦ୍ର ! ବାକି ଜଣ କେତେ—

ନୀରବେ ରହନ୍ତି ଗୃହ୍ଣି କାଳର ଅହ୍ୱାନ
ଦେବତାରୁ ବଳି ତୁମେ, ରଖ ରଖ ପ୍ରାଣ !

ସାମାନ୍ୟ ମାନବ ନୁହ ତୁମେ ଦେବଦୂତ,
ତୁମ ରକ୍ତେ ନିର୍ଜୀବ ଏ ଧରା ନିତ୍ୟ ପୂତ !
ଅମୃତ ମଙ୍ଗଳମୟ ତୁମ ପାଦସ୍ପର୍ଶେ
ମୃତ୍ୟୁତଳେ ପ୍ରାଣପଦ୍ମ ବିକଶେ ହରଷେ ।

ବନ୍ୟାପ୍ରପୀଡ଼ିତ ପଞ୍ଚଶତ ନିଃସ୍ୱ ଦୀନ ଗ୍ରାମବାସୀ,
ସହାୟସମ୍ବଳହୀନ କ୍ଷୁଦ୍ର ପଲ୍ଲୀ ଯାଇଛି ଯେ ଭାସି—
ଗତ ସନ୍ଧେ ! ଶୂନ୍ୟହସ୍ତେ ଛାଡ଼ି ସବୁ ଆସିଲେ ପଳାଇ
ପଥ ପାର୍ଶ୍ୱେ ! ବୃକ୍ଷତଳ ବିନା ତାଙ୍କୁ ଆଶ୍ରା ଅନ୍ୟ ନାହିଁ
ତା ପରେ ପ୍ରବଳ ବୃଷ୍ଟି, ଅବିରଳ ଧାରା ପଡ଼େ ଝରି
ଶୂନ୍ୟ ପିଣ୍ଡ, ବିବସନ ଦେହ, ମଜ୍ଜା ଅସ୍ଥି ଉଠେ ଥରି ।

ଲତାଗୁଳ୍ମ ଅନ୍ତରାଳେ ଯୁବା ନାରୀ ରଖେ ତାର ମାନ
ତା କୋଳେ ବୁଭୁକ୍ଷୁ ଶିଶୁ, ପାଶେ ବୁଢା କହେ ଗଲା ପ୍ରାଣ !
ମୂକ ପଶୁସମ ସର୍ବେ ଶୂନ୍ୟଠାକୁ ରହିଛନ୍ତି ଚାହିଁ
କାନ୍ଦବେ ଅଶ୍ରୁ ଲାଗି ? ନେତ୍ରେ ତାଙ୍କ ଜଳବିନ୍ଦୁ ନାହିଁ !

କାହା ମୁଖେ ନାହିଁ ଦଶେ ଭୋଗୀ ଜନ କ୍ଷୀଣ ଆଶାରେଖା
ଗୋଷ୍ଠ-ଗାଭୀସମ ମୂକ କରୁଛନ୍ତି ମରଣ ଅପେକ୍ଷା ।
ଗୃଧ୍ର ଦଳ ବୃକ୍ଷଶାଖେ କରୁଛନ୍ତି ଅବା ଉପହାସ
ନରଭାଗ୍ୟ ଦେଖି ତହିଁ ! ଚତୁର୍ଦ୍ଦିଗେ ମରଣର ହାସ !

ସାମ୍ୟବାଦୀ ଦେଶସେବୀ ଧନ-ସୌଧେ ଅଙ୍ଗୁଳି ଦର୍ଶାଇ
ତର୍କି କହେ, ଧ୍ୱଂସ ବିନା ଦରିଦ୍ରର ଅନ୍ୟ ଗତି ନାହିଁ !
ପରଅଙ୍ଗପୁଷ୍ଟ ଯେତେ ନିବସନ୍ତି ବିଳାସ ବ୍ୟସନେ
ଗତ୍ୟନ୍ତର ନାହିଁ ଯେବେ ନ ମିଶିବେ ମାଟିରେ ସେ ରଣେ ।

ବନ୍ୟାକ୍ଳିଷ୍ଟ ବୃଦ୍ଧ କହେ, "ଲୋଡ଼ା ନାହିଁ ବାବୁ ଅଭିଶାପେ
ସୃଷ୍ଟିର ମଙ୍ଗଳ ହେଉ ଆମେ ପଛେ ମରୁଁ ଅନ୍ନ-ପାପେ ।
ପୁରାତନ ଏ ଧରାରେ କେତେ ଧ୍ୱଂସ କେତେ ସୃଷ୍ଟି ଲୀଳା
ପ୍ରୟାସ କରଇ ବ୍ୟର୍ଥ—କହ ଏହୁ ବନ୍ୟା କାହିଁ ଥିଲା ?

ସକଳ ଉଦ୍ଦେଶ୍ୟ ତାର ! ନତୁଏ ସେ ଯେତେ ପରକାର
ନାଚେ ନରଜୀବନକ ପଶୁସମ କରେ ହାହାକାର !
ଜାଣେ ଏକା ସେହୁ ସିନା ପଥଧାରେ କିପାଁ କଲା ଠିଆ
ଉଦ୍ଦେଶ୍ୟ ତା ହେଉ ସିଦ୍ଧ ଏ ଜୀବନ ଯାଉ ଦିଅନିଅ !

ଜଗନ୍ନାଥ, ଜଗନ୍ନାଥ, ସେହୁ ଏକା ଭରସା ଜୀବନେ !"
କହି ଶୀର୍ଣ୍ଣବଳ ବୃଦ୍ଧ, ସାଶ୍ରୁନେତ୍ରେ ନମେ କବି ଜଣେ ।

# ମୋ ଜନମଭୂଇଁ

ଶ୍ରୀ ରାଧାନାଥ ରଥ

ତୁହି ଗୋ ଜନମ-ଭୂଇଁ ଜୀବନ-ଦାୟିନୀ
କା ଦେବ ବଷାଦ କୁହାଁ ତୁ ଅଭିମାନିନୀ ?
ସରଳ ତରଳ ପ୍ରାଣେ ତୋ କୋଳେ ବଢ଼ଇ
ନହେଁଖଇ ରୂପେ ତୋର ମରତ-ମାଧୁରୀ ।
କେତେ କେତେ ଅସି ତୋରେ ସେବଇ ତପନ,
ଅବିରତ ଅଲଟଇ ମଳୟପବନ ।
ସୁନୀଳ ଅମ୍ବର ତୋରେ ବଚନ୍ତି ବତାନ
ଅଲେକ ପଲକେ ଫେଡ଼େ ତାମସ-ବଧାନ ।
ଅଗଣିତ ତାରଗକ ଖଚିତ ଗଗନୁ
ସୁଧାକର କରେ ତୋର ଉଜଳେ ଅତନୁ ।
ନବୀନ ନୀରଦ ଭ୍ରମି ଅସି ତୋ ଲପନେ
ନୀରଧାରେ ଧୋଇ ତୋରେ ଶ୍ୟାମଳ ବସନେ–
ସଜାଇ ଯତନେ ଖଞ୍ଜେ ସୁମନସମ୍ଭାର,
ପୁଲକଇ ପ୍ରାଣେ ତୋର ସୁରଭି ସଞ୍ଚାର ।
ତୋ ଅଞ୍ଚଳ ଚହିତ ଗୋ ଶ୍ୟାମ ଦୁର୍ବାଦଳେ,
ତୋ ବର ପୂରିତ ଗୁରୁ ଶ୍ୟାମ ଶସ୍ୟମାଳେ ।
ତୋ ଅଙ୍ଗେ ଗୁମର ଦୋଳେ ପାଦପ-ଶିଖର
ତୋ ସନ୍ତାନେ ଷୀର ମା ଗୋ ଗିରି-ନଦୀ-ଧାର
ବନ ଲତାକୁଞ୍ଜ ତୋର କଙ୍କଣ ଚକୁର,
ତୁଙ୍ଗ ଶ୍ୟାମ ଗିରି ତୋର କବରୀ ମଞ୍ଜୁଳ ।

ଦିବାଲୋକେ ଫୁଟେ ତୋର ଅଧରେ ସୁହାସ
ନିଶୀଥ-ତାମସ ତୋର ନିଦ୍ରାର ଅଭ୍ୟସ ।
ଶ୍ରବଣେ ଶୁଣାନ୍ତି ତୋରେ ବିହଙ୍ଗକାକଳୀ,
ଅଶେଷ ଅନନ୍ତ ଛନ୍ଦେ ସଙ୍ଗୀତଲହରୀ ।
ସନ୍ତାନ ତୋ କୋଳେ ମା ଗୋ ମାନବ-ସଂସାର,
ଜୀବଜନ୍ତୁ ପଶୁକୁଳ ତୋର୍ ପରିବାର ।
ସର୍ବେ ଭୁଞ୍ଜ ସମସୁଖେ ପାନ୍ତି ଲୋ ଜନନି ।
ତୋ ନେତ୍ରେ ସୁନ୍ଦର ସବୁ ଦିବସ ରଜନୀ ।
ସୁନୀଳ ପୟୋଧି ତୋରେ ଅନନ୍ତ-ଅମୃତ,
ତୋ ବୁକୁରେ ସ୍ନେହ ସୁଧା ସାଗର ସତତ ।
ତୋ ସ୍ନେହ ଜନନୀ ହୃଦେ ଦିବ୍ୟେ ପ୍ରକଟିତ,
ତୋ ନିଦେଶେ ଜୀବ-ଧର୍ମ ସଦା ନିୟନ୍ତ୍ରିତ ।
ସ୍ୱଜନସେନେହସୁଖେ ତୋର ଆଶୀର୍ବାଦ,
ସ୍ୱଜନବିଚ୍ଛେଦେ ଦେଖେ ଜନନି, ତୋ ଖେଦ ।
ସ୍ଥାବର ଜଙ୍ଗମ ସେବା ତୋ ପାଳନ-ସୁଖ,
ପ୍ରାଣୀର ବେଦନା ତୋର ସୁରୂଏ ଅସୁଖ ।
ତୋ ପ୍ରୀତି-ପୁରିତ ପୂତ ବସୁଧା ଆଧାର—
ପିତା ମାତା ଭାଇ ବନ୍ଧୁ ସ୍ୱଜନ ସଂସାର ।
ତୋ କୋଳେ ଅତିଥିଜନେ ଅଠନ୍ତ୍ର ସୋଦର,
ସର୍ବେ ସମଭାବ ସର୍ବେ ସମାନ ଆଦର,
ସମବୁଦ୍ଧି ସମଚିନ୍ତା ସମଦରଶନ,
ଶୁଦ୍ଧପୂତ ସ୍ୱାର୍ଥ-ଯଜ୍ଞେ ମୁକ୍ତିର ସାଧନ,
ଶ୍ରବଣ ମନନ ଧ୍ୟାନ ତୋ କୀର୍ତ୍ତି କଥନ,
ତୋ କୋଳେ ଜନମ ପୁଣି ତୋ କୋଳେ ମରଣ,

ତୋହର ରକ୍ଷଣ ହେଉ ଜୀବନ-ବିଳାସ,
ତୋହର ବିକାଶେ ହେଉ ମୋ ଅସ୍ମ-ପ୍ରକାଶ ।
ବିଶ୍ୱ ତୋ ବିଜୟେ ଲଭୁ ଶୁଭ ସମାଚାର
ବିଶ୍ୱଧର୍ମ ସାଧନେ ତୁ ଏକାନ୍ତ ଆଧାର ।
ହେଲେ କିବା ପୂଜା ଉପଯୋଗେ ବ୍ୟତିକ୍ରମ,
ତେଣୁ ଗୋ ଜନନି, ଅଛି ଏ ବିଚ୍ଛେଦ ମମ ?
ଏ ନୁହେ ଉପେକ୍ଷା ଏହା ପୂଜନେ ପରୀକ୍ଷା,
ବାସନାବିହୀନ କର୍ମ ସାଧନେ ଏ ଦୀକ୍ଷା ।
ତୋହର ସେବାରେ ଅଛେ ଶାନ୍ତି ନିରନ୍ତର,
ତୋ ପଦପରଶେ ମା ଗୋ ପୁଲକେ ଅନ୍ତର ।
ତୋହର ବନ୍ଦନେ ସିନା ବିଭୁ ସଂକୀର୍ତ୍ତନ,
ତୋହ ଅଶୀର୍ବାଦେ ଧନ୍ୟ ହେଉ ଗୋ ଜୀବନ ।

# ଜୀବନ-ନଈ

ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ବି. ଏ.

ମରଣ-ସାଗରେ ଜୀବନର ନଦୀ ବୋହିଯାଏ ତରତର
କେ ରୋଧିବ ପଥ ? ଅବାଧ ସେ ଗତି, ଭାସିଯାଏ କୂଳକୂଳ ।
ଜୀବନର ଯେତେ ବୈଭବ, ବିଳାସ, ସେ ଚଞ୍ଚଳ ସ୍ରୋତେ ଭାସି
ଲିଭିଯାଏ କାହିଁ ସପନ ମତ ଗୋ, କେ ତାରେ କଳିବ ଆସି ?
ସନ୍ଧ୍ୟାସମ ତାର ବରଣର ଶୋଭା ଲିଭିଯାଏ ମେଘକୋଳେ
ପଶ୍ଚିମ-ପବନେ କଣଳସୁସମ ଜୀବନ-କଳିକା ଝରେ ।
ନୀରବତା କୋଳେ ଜୀବନର ବୀଣା ହରାଏ ସକଳ ଗାନ
ବାସ୍ତବତା ତାର ସପନର ଅଙ୍କେ କ୍ଷଣେ ହୁଏ ଅବସାନ ।
ସତ୍ୟ ଲୁଚେ ତାର କଳପନା କୋଳେ, ପୂର୍ଣ୍ଣ ହୁଏ ଶୂନ୍ୟ କ୍ଷଣେ
ଜୀବନର ଯେତେ ନଗ୍ନ ମସୀଚିତ୍ରା, ଛଳରୂପେ ଆସେ ମନେ ।
ଜୀବନର ଶତ ବିଫଳ ସପନ ବୁଦ୍‌ବୁଦ ସମ ଛଳେ
ଲିଭିଯାଏ କ୍ଷଣେ ଉଠିଣ ତରସେ, କେ ତାର କଳନା କରେ ?
କେତେ ଯେ ଜୀବନ ଇନ୍ଦ୍ରଧନୁସମ ମରଣ-ଗଗନ-ଅଙ୍କେ
ଲିଭିଯାଏ କ୍ଷଣେ ରୂପର ବିକାଶେ, କେ ତାର ହିସାବ ରଖେ ?

# ମୃତ୍ୟୁଶଯ୍ୟାରେ ମନସ୍ୱୀ ମଧୁସୂଦନ

ଶ୍ରୀ ନବକିଶୋର ଦାସ, ବି. ଏ., ବି. ଏଲ୍.

ମରଣ-ଆହ୍ୱାନ ଶୁଣି          ଚମକିଲା ବୁଦ୍ଧ
ଚକିତେ ଗୃହିଁର ବଶେ          ହୋଇ ଅତି ମୁଗ୍ଧ ।
ଶୁଣଇ ମରଣ-ବେଣୁ—          ଅମର ସଙ୍ଗୀତ
ସେ ସ୍ୱନେ ମଣଇ ଯେତେ          ବିଶ୍ୱ ତରଙ୍ଗିତ ।
ଧନୀ, ଦରିଦ୍ର ସକଳେ          ରହିଛନ୍ତି ସୁଖେ
ଶୁଣିବାକୁ ମହାଗୀତ          ମରଣର ମୁଖେ ।
ବସନ୍ତ ସୁରମ୍ୟ ହର୍ମ୍ୟ          ଦୁଃଖପ୍ରଦପୁରୀ
ରହେ ସଦା ଭବେ ଅବା          ସେହି ଗୀତ ସ୍ୱର ।
ମୃତ୍ୟୁ-ବେଣୁ-ମଧୁ-ଗୀତ          ଖେଳଇ ଗଗନେ
ଖେଳଇ ଜୀବନ-କୁଞ୍ଜେ          ମଳୟ ପବନେ ।
ସେ କରୁଣ ମୃତ୍ୟୁ-ରାଗେ          ବୃନ୍ତଚ୍ୟୁତ ଫୁଲ
ଜରା, ରୋଗ, ଶୋକ ତେଜି          ଜୀବନ ପ୍ରଫୁଲ୍ଲ ।
ମାନବ ପ୍ରାଣ-ଅଞ୍ଚଳ          ପାରିଦଏ ସୁଖେ
ମୃତ୍ୟୁ-ଅମୃତ-ସଙ୍ଗୀତ          ଫୁଟେ ତାର ମୁଖେ ।
ସ୍ୱପନରହସ୍ୟସମ          ଲାଗେ ଚିତ୍ରେ ଖେଳ
ମୃତ୍ୟୁପାଦେ ଅର୍ଘ୍ୟ ଦେବ          ଭାବି ପାଏ ବେଳ ।
ଭାବଇ ମାନବ ଦେବ          ପ୍ରାଣ-ପାତ୍ର ଭରି
ଜୀବନେ କି ପୁଣ୍ୟମୟ          କର୍ମ ଶ୍ରଦ୍ଧାଞ୍ଜଳି ।
ପୁଣି ଭାବେ ରୂପେ ତାର          ହସଇ ନୀରବେ
ମୃତ୍ୟୁ ଅର୍ଘ୍ୟ ହେବ କିସ          ଏ ଶେଷ ଉତ୍ସବେ ?

ଶିଥିଳ ଶରୀର, ଦେଖି ଶିରେ ପକ୍ୱ କେଶ
ଜୀବନ ଏହୁ କି ମୃତ୍ୟୁ. ରୂପ ଅର୍ଘ୍ୟ ଶେଷ ।
ନାହିଁ, ନାହିଁ, ରୂପ ତେଜ ଖୋଜୁଇ ମାନବ
ତା ଜୀବନ-ଗର୍ଭାଧରେ ଅପୂର୍ବ ବିଭବ ।
ହସଇ ମୃତ୍ୟୁଦେବତା ଜନା ଅବାହିଁନେ
ନାଚଇ ବାଇ ତା ବେଣୁ ପ୍ରାଣ-ବୃନ୍ଦାବନେ ।
ଚମକେ ମାନବ, ମୃତ୍ୟୁ ଗୃହେଁ ମୁଗ୍ଧଭୋଳେ
ଗୃହିଁଇ ମାନବ ତାକୁ ପ୍ରେମପୂର୍ଣ୍ଣଭୋଳେ ।
ସ୍ନିଗ୍ଧ ଗୃରୁ ସନ୍ଧ୍ୟାଲୋକେ ବାରୁଣୀ ଯେସନ
ତେସନ ଜ୍ୱଳଲେ ଶେଷ ମାନବଜୀବନ ।
ଗୋଧୂଳିଅମ୍ବରତଳେ ଗୋପାଳମୁରଲୀ
ତେସନ ମୃତ୍ୟୁ-ମୁରଲୀ • ଯାଏ ସେ ତରଳି ।
ଶୁଣଇ ମୃତ୍ୟୁ-ସଙ୍ଗୀତ ଗମ୍ଭୀର ମଧୁର
ସାଗର କି ଚନ୍ଦ୍ରାଲୋକେ ପ୍ରେମେ ଭରପୂର ?
ସିନ୍ଧୁସମ ଦସ୍ତାରତ ହୁଏ ନର-ବକ୍ଷ
ଭବ-ତରୀ ଅର୍ଘ୍ୟ ଭର ଚଳେ ଲକ୍ଷ ଲକ୍ଷ ।
ଭେଟିବାକୁ ତା ଜୀବନ ଅନ୍ତରଦେବତା;
ମୃତ୍ୟୁ ମାଙ୍ଗଳିକ ଦିଏ ଆଶାର ବାରତା ।
ମହାପ୍ରେମ ଅନୁରାଗେ ବୃଦ୍ଧ ପୂଜାବ୍ୟସ୍ତ
ତେଜଇ ବିଶ୍ୱ-ମମତା ମଣଇ ଆଶ୍ୱସ୍ତ ।
ମୃତ୍ୟୁ ଟାଣିନିଏ ସୁଖେ ତାର ମହାକୋଳେ
ଛାୟାଲୋକେ ତରୁସମ ବୃଦ୍ଧ ଶୁଏ ଭୋଳେ ।

# ନଦୀର ବେଦନା

ଶ୍ରୀ ଚନ୍ଦ୍ରଶେଖର ମିଶ୍ର, ବି. ଏଲ୍. ଡି. ଇଡି.

ନୀରବେ ବହେ ନଦୀ ନିର୍ମଳ ଧାରେ
ପାଶ ଶ୍ୟାମଳ କୁଞ୍ଜ ଶୈଳ-କ୍ରୋଡ଼େ,
ତୀରେ ବୃକ୍ଷଗୀତଳେ ବସି ବନ୍ଧନେ
ବେଦନାଭରେ କବ ଭ୍ରାନ୍ତ ମନେ ।



ଏହି ଯେ ନଦୀ ଯାଏ ଦିଗନ୍ତେ ବହି
ବାର ନୋହିଲ କଥା ଗଲା ସେ କହି,
ରହିଗଲା ସେ ଭାବେ ଅସ୍ଫୁଟ ତାନ
ସମୀର ବାହିନେଲା ସରିତ-ଗାନ ।

ଅତି ଶରଧା ଥିଲା ସ୍ନିଗ୍ଧ ସ୍ତବକେ—
ନସି ପଡ଼ିଲା କରୁ ନଦୀ-ଜଳଦକେ,
ଭାସିଗଲା ତା ଅଜ ଫେରିଲା ନାହିଁ
ଗଲା ସେ କାହା ଲାଗି ଗଲା କିପାଇଁ ?

ଧୀରତ-ନାମେ କବ ଡାକିଲେ ଥରେ
ଜାଗିଲା ପ୍ରତିଧ୍ୱନି ଗିରି କନ୍ଦରେ,
ପ୍ରୀତି-ପ୍ରତିମା ଆହା ! ନାହିଁ ତ ପାଶେ
କିଏ ଶୁଣିବ କହ ଅନ୍ତର-ଭାଷେ !

ଗଗନେ ଜଳୁଥିଲା ଲକ୍ଷ-ପ୍ରଦୀପ
ନନ୍ଦୀ-ଗରବେ ଲେଙ୍ଗି— ଗଲେ ସମୀପ,
ଚଞ୍ଚଳ ନୀରେ ଛୁଇଁ କୋମଳ ଥରେ
ସ୍ୱପନ-ଛବି ଜାଗେ ଜୀବନମନ୍ତ୍ରେ ।

ନବ ବସନ୍ତ-ବାତ ମୋହିଲେ ମନ
ଗୋଗୋଷ୍ଠୁଁ ଖେଳଅସେ ବଂଶୀ-ନିସ୍ୱନ,
ଶତ ଜନ୍ମର ସ୍ମୃତି ମିଶେ ସେ ତାନେ
ମଧୁ-ଗରଳ ଢାଳେ ବିରହ-କାନେ ।

ବିଷାଦେ ପୋଡ଼ି ମରେ ନିଦାଘେ ମଗ୍ନ
ଶୁଷ୍କ-କାନନ ଯଥା, ପୋଡ଼େ ବିରହୀ,
ପାଣ୍ଡୁର ବଦନେ ଦିନ— ଗଣ୍ଡ ବିଶେଷ
ସ୍ମୃତି-ମନ୍ଦିର ଖୋଲେ ଋତୁ-ପ୍ରବେଶ ।

ବରଷାକାଳେ ଦୂର ଗିରି-ଶିଖରେ
ମେଘ-ମୁକୁଟ ଅଧା ବିଷାଦ ଧରେ,
ଘନ ଅନ୍ଧାରେ, ଜଳ— ପାତେ କି କଥା
କି ଭାବେ ହୃଦେ ଅଣେ ଦାରୁଣ ବ୍ୟଥା ।

ପକ୍ଷୀଏ ଗାଇ ଲୀନ ହେଲେ ଗଗନେ
ବଣା-ଲହରୀ ଡାକେ ଗୀର ବିଜନେ,
କାନନ ଭେଦି ବାତ କଲା ନିସ୍ୱନ—
"ନର-ଜୀବନ ଅଧା ଖାଲି ସ୍ୱପନ ।

ଶାଶ୍ୱତ-ଶୋଭା ଯାହା, ନୁହେ କାହାର
ଚିର-ପ୍ରୀତିର ନର ନୁହେ ଅଧିକାର ।

ଜଗତେ କାହିଁ ନାହିଁ    ନିର୍ମଳ ସୁଖ
ନିର୍ମଳ ହାସ୍ୟ କାର    ରହିଛି ମୁଖ ?

ଧନ୍ୟ ଦଗଧ ନର—!    ତପତ-ଶ୍ୱାସେ
ବେତେ ବଞ୍ଚିବ କହ    ଆଶା-ଆଶ୍ୱାସେ ।
କୁସୁମ-ଶିଶୁ ରଖି    ନ ଦଏ କାଳ
ବଗୁର କର, ଏହା    କେତେ କରାଳ ।

ପାଷାଣେ ଲେଖିଥିଲ    ପ୍ରାଣ-ସଙ୍ଗୀତ
ଦେଖିଲ କେତେ ଦନେ    ଚିହ୍ନ ନାହିଁ ତ,
ସମୀରେ ଦେଲ ଯେଉଁ    ମରମ-ତାନ
ବନ୍ଧୁ ବିରହେ ପିୟୂ    କଲ ତା ଗାନ ।

ପାହାନ୍ତ ନବେ ଉଠେ    ପ୍ରଶଂସା-ତାସ
ଭରତ ତାଳପାଏ    ପୀଯୂଷ-ଧାସ
ଭଣ୍ଡ-ବଧାବେ ପୁଣ୍ଡି    ତାର ସଙ୍ଗୀତ
ଶୋକ-ଶିଶିରେ ପୁଣି    ଧନ୍ୟ ଲୋହିତ ।

ଜାଣିଲ ନାହିଁ କଏ    ବହଙ୍ଗ-ବ୍ୟଥା
କଏ ବୁଝିଛି କହ    ତଟିନୀ କଥା ?
ଗାରବେ ଜଳ୍ପ କର୍ପା    ଶ୍ୟାମ ଭୂଧର
ଗାରବେ ନମେ କର୍ପା    ପୁଷ୍ପ ସୁନ୍ଦର ?

ମର୍ତ୍ତ୍ୟ ଦୁଅନ୍ତା ପର    ଦେବ-ଆବାସ
ଯେତେ ଭାବନା ତାର    ହେଲେ ପ୍ରକାଶ ।
ସ୍ୱପ୍ନେ କରଇ କବ    ବଣ୍ଟ-ସର୍ଜ୍ଜନା
ସତ୍ୟେ ସତ୍ୟେ କ ତା ?    ତେଣୁ ବେଦନା ।

# ଆପ୍ତବଚନ

## ୰ ଜଗନ୍ନାଥ ଦାସ

ପ୍ରାଣୀର ଭଲ ମନ୍ଦ ବାଣୀ   ମରଣକାଳେ ତାହା ଜାଣି ।

* * *

ଯେ ପ୍ରାଣୀ ପାଞ୍ଚେ ପର ମନ୍ଦ   ତା ମନ୍ଦ ପାଞ୍ଚନ୍ତି ଗୋବିନ୍ଦ ।

* * *

ଏ ମନ ଖୋଜୁଥାଇ ଯାହା   କାଳେ ପ୍ରାପତ ହୁଏ ତାହା ।

* * *

ଏ ଦେହ ଥିଲେ ସର୍ବ ପାଇ   ଜଳେ ଯେସନ ଚନ୍ଦ୍ର ଛାଇ ।

* * *

ମର୍ତ୍ତ୍ୟମଣ୍ଡଳେ ଦେହ ବହୁ   ଦେବତା ହୋଇଲେ ମରଇ ।

* * *

ଅସ୍ୱାରଣଲେ ସର୍ବ ସିଦ୍ଧି   ଜାଣିବ ଏହୁ ମହାବଧି ।

* * *

ଧନ ଅର୍ଜିଲେ ଧର୍ମ କର   ଧର୍ମେ ପ୍ରାପତ ନରହର ।

* * *

ଅର୍ଥ ସଞ୍ଚନ୍ତି ଯେତେ ନର   କେବଳ ଶ୍ରମ ତାହାଙ୍କର ।

* * *

ଦୁଃଖେ ସଞ୍ଚିତ-ଯେତେ ଧନ   ସେ ନୁହେଁ ସୁଖେ ପ୍ରୟୋଜନ ।

* * *

ଧନ କାର୍ପଣ୍ୟ ସେବାଫଳେ    କିବା ଅସାଧ୍ୟ ମହୀତଳେ ?

* * *

ଯେ ପକ୍ଷୀ ଉଡ଼େ ଯେତେ ଦୂର    ସେ ଜାଣେ ତହିଁର ବେଭାର ।

* * *

ଯହିଁ ଅନେକ ସଙ୍ଗ ମିଳ    ଅବଶ୍ୟ ଉପୁଜଇ କଳି ।

* * *

ସୁକର୍ମେ ସାଧୁସଙ୍ଗ ପାଇ    କୁକର୍ମେ ଅସାଧୁ ମିଳଇ ।

* * *

ଉପାୟ କର ନାନାମତେ    ଫଳିବ କର୍ମର ଅଯତ୍ନେ ।

* * *

ଅମୃତ ବଦନ୍ୟ ବଚନ    କହୁ ତୋଷିବ ପ୍ରାଣିମନ ।

* * *

ସର୍ବେ ଚଳିବେ କାଳବଳେ    ଯଶ ରହିବ ମହୀତଳେ ।

* * *

ଯାହାକୁ ରକ୍ଷିବେ ଅନନ୍ତ    କି କରିପାରେ ବଳବନ୍ତ ?

* * *

ଧନ୍ୟ ଜୀବନ ଏ ଜଗତେ    ଯେ ପ୍ରାଣ ଧରେ ପ୍ରାଣିହିତେ ।

* * *

ଅହାରେ ଭଲ ମନ୍ଦ ନାହିଁ    ଯେ ସ୍ଥାନେ ଯେମନ୍ତ ମିଳଇ ।

* * *

ଯେ ପୁଣ୍ୟ ଆପଣେ କରିବ    କେବେହେଁ ପରେ ନ କହିବ ।

৺ ରାଧାନାଥ ରାୟ

କେହୁ ରହୁ ନାହିଁ ରହିବ ନାହିଁଟି
ଭବରଙ୍ଗଭୂମିତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ ।

* * *

ଉଚ୍ଛନ୍ନ ଦାନ୍ତିକେ ହସ୍ତେ ରଖିବାକୁ
ସମସ୍ତଙ୍କ ଭାଗ୍ୟଡୋର
ନିଜ ଭାଗ୍ୟଡୋର କାଳହସ୍ତେ ଏହା
ପକାନ୍ତି ହେଲେ ପାସୋର ।

* * *

ଏ ଭବସାଗରେ ସର୍ବଗ୍ରାସୀ କାଳ—
ବାତ୍ୟା ବହେ ଅବିରତ
ଏହା ଜାଣି ଲୋକେ କେଉଁ ଲାଭ ଆଶେ
କଳହେ ହୁଅନ୍ତି ରତ ?

* * *

ବଡ଼ କ୍ରୂର କାଳ ବଡ଼ ଅବଶ୍ୟାସୀ
ହାବୋଡ଼ିବ ସେ. ଅଛନ୍ତି ତେ ଅସି,
ଦୂରବର୍ତ୍ତୀ ଜାଣି କାଳକୁ ଯେ ହସେ
ହସି ସେ ତା ପଛେ ଅସି ଲୁଚି ବସେ ।

* * *

ଧର୍ମ ଏକା ସିନା ମହତପଣିଆ
ଆଉ ସବୁ ପଣ ଅଚ୍ଛେଇଦନିଆ ।

* * *

ଲଢ଼ିବାକୁ ଶିକ୍ଷ ନାହିଁ ପରମନ
ସେ କ କେବେ ପ୍ରଭୁ ପଣକୁ ଭଜନ ?

* * *

ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖିଲେହେଁ ନୂଆ ଦଶୁଥାଇ ।

* * *

ସୁଖିରୂପେ ଯାହା ଜନନେନେ ଦଶେ
ହାତେ ଅପେ, ହାତୁଁ ପଡ଼ିବା ପାଇଁ ସେ ।

## ୮ ଗୋପବନ୍ଧୁ ଦାଶ

ମାନବ ଜୀବନ ନୁହଇ କେବଳ
ବର୍ଷ ମାସ ଦନ ଦଣ୍ଡ
କର୍ମେ ଜୀଏ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।

* * *

ନ ଅଟକେ କର୍ମ କେତାର ଅଭାବେ
ଧର୍ମନାବ ଚଳେ ଧର୍ମର ପ୍ରଭାବେ ।

* * *

କଢ ଜଲ୍ପ କର୍ମ ଯେବେଗେ କରେ ନର
ଏଡ଼ ନ ପାରେ ତା ବ୍ରହ୍ମା ହରହର ।
ଧର୍ମ ନକଟରେ ହୁଏ ଯେ ଡଜଲ
ପରମାଣୁ ତହିଁ ଯାଏ ନାହିଁ ଭୁଲ ।

* * *

ବିପଦ ପ୍ରଭୁଙ୍କ          କଷଟିପାଷାଣ
ପରଖନ୍ତି ତହିଁ          କରି ହୃଦଠାଣ ।
ବିଦଗଧ ହେଲେ          ବିପଦ-ଅନଳେ
ଭସ୍ମ ନୋହୁ ଯେହୁ          ଦାଉ ଦାଉ ଜଳେ ।
ସେହୁ ଏକା ଶୁଦ୍ଧ          ସୁବର୍ଣ୍ଣହୃଦୟ
ଲଭେ ଅଶ୍ୱାସନା          ଅଭୟ ବିଜୟ ।

* * *

ପଛ ଘୁଞ୍ଚା ନାହିଁ ବୀରର ଜାତକେ
ନ ମରେ ସେ କେବେ ପରାଣ ଆତଙ୍କେ ।

* * *

## ୮ ବଳଭଦ୍ର ଦେବ

ଉତ୍ସାହସମ୍ପନ୍ନ          କାର୍ଯ୍ୟେ ଅନଳସ
ଦୃଢ଼ ସାହସୀ ଯେ ଜନ
କର୍ମ-ଅନୁକୂଳା          ଭାଗ୍ୟଦେବୀ ତାକୁ
ସର୍ବଦା ହନ୍ତି ପ୍ରସନ୍ନ ।

* * *

ନିଯୁତ ପୁରିଲେ          ଅବଲମ୍ବେ କାଳ
ନଅଇ ପ୍ରାଣ ଓଠାର
ଜାଣି ଶୁଣି ଏଥି          କାହିଁ ଅନିଷ୍ଟିତ
ପ୍ରାଣ ପାଇଁ ହେବ ଧାର ?
ଚିର ଦିନ ଅହା          କେ ବଞ୍ଚି ରହୁଛି
ମୃତ୍ୟୁ ତ ହେବେ ନିଶ୍ଚିତ
ଭୋଗ ଦଣ୍ଡ ବ୍ୟାକେ          ଚତୁର୍ଦ୍ଦିଗେ ମୃତ୍ୟୁ
ହୁଏ ନିରତ ଘୂର୍ଣ୍ଣିତ ।

* * *

ପ୍ରବଞ୍ଚନାପଟୁ          କ୍ରୂର କାଳ ଅହା

ନାନା ବେଶ ଧରି ନରେ

ହସାଇ କନ୍ଦାଇ          ଏ ପ୍ରପଞ୍ଚେ କେତେ

ପ୍ରପଞ୍ଚ ଭିଅଣ କରେ ।

* * *

ସ୍ୱଦେଶ ସ୍ୱଜାତି          ସ୍ୱଜନ ଚରଣେ

ନୁହଇ ଯେହୁ କାତର

ହତଭାଗ୍ୟ ସେହୁ          ଘୃଣିତ ନରକ—

ପ୍ରଥମ ତାର ଅନ୍ତର ।

ଦେଶୀୟ ଜନଙ୍କୁ          ସମାଦର କରି

ନିଜ ଭାଇଠାରୁ ବେଶୀ

ସ୍ୱଦେଶୀୟ ଶିଳ୍ପ—          କଳା ବଢ଼ାଏ ଯେ

ସେ ସିନା ଦେଶହିତୈଷୀ ।

* * *

ଜାଣିଲ ଜାଣିଲ          ଭୃତ୍ୟସହ ଅଟେ

ଅବଧେୟ ପରଦାସ

ପରଦାସଜାତି          ପ୍ରଭୁ ଅବଲମ୍ବେ

ଲଭନ୍ତି ସିନା ବିନାଶ ।

* * *

ବିବିଧ ବିଷୟେ          ବ୍ୟାପୃତ ରହିବା

ବଡ଼ପଣିଆ ଲକ୍ଷଣ

ନିଜ ଅସୁବିଧା          ନ ଗଣି ଗୁଣୀଏ

କରନ୍ତି ଲୋକରଞ୍ଜନ ।

## ସନ୍ତାନର ଉକ୍ତି

### ୬ ମଧୁସୂଦନ ଦାସ

ସ୍ୱର୍ଗତ ମଧୁସୂଦନ ଦାସ, ଏମ୍. ଏ., ବି. ଏଲ୍., ସି. ଆଇ. ଇ. ଉତ୍କଳମାତାର ଶ୍ରେଷ୍ଠତମ ସନ୍ତାନ । ସେ ଉତ୍କଳର ଘରେ ଘରେ 'ମଧୁ ବାରିଷ୍ଟର' ବା 'ମଧୁ ବାବୁ' ବୋଲି ପରିଚିତ ଥିଲେ । ସେ ଉତ୍କଳରେ କର୍ମବୀର, ଜ୍ଞାନବୀର ଓ ଦେଶଭକ୍ତର ଆଦର୍ଶ ରୂପେ ଜନ୍ମିଥିଲେ । ଓଡ଼ିଆ ଜାତିର ଦୁଃଖ ଦାରିଦ୍ର୍ୟ ଦୂର କରିବା ଲାଗି ତାଙ୍କର ପ୍ରାଣ ସର୍ବଦା ବ୍ୟାକୁଳ ହେଉଥିଲା । ସେ ଓଡ଼ିଶା ପ୍ରଦେଶର ମୂଳ ଭିତ୍ତି ସ୍ଥାପନ କରିଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବହୁବର୍ଷବ୍ୟାପି ଉତ୍କଳ ସମ୍ମେଳନୀର ପ୍ରଚେଷ୍ଟାରେ ଏହି ପ୍ରଦେଶ ୧୯୩୬ ମସିହାରେ ଗଠିତ ହେଲା; କିନ୍ତୁ ଦୁଃଖର କଥା—ଯେଉଁ ମନୀଷୀ ଚିରଜୀବନ ଓଡ଼ିଆ ଜାତିର ଏକତ୍ରୀକରଣ ଲାଗି ଯତ୍ନ କରିଥିଲେ, ସେ ତାଙ୍କର କର୍ମନିଷ୍ଠାର ଫଳ ଦେଖିବା ପୂର୍ବରୁ ଇହଧାମ ତ୍ୟାଗ କରି ଚାଲିଗଲେ । କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ୧୮୪୮ ଖ୍ରୀଷ୍ଟାବ୍ଦର ଅପ୍ରେଲ ମାସରେ ମଧୁସୂଦନ ଜନ୍ମଗ୍ରହଣ କରିଥିଲେ ଏବଂ ୧୯୩୪ ଖ୍ରୀଷ୍ଟାବ୍ଦ ଫେବ୍ରୁୟାରି ୪ ତାରିଖରେ କଟକରେ ଅନନ୍ତମାର୍ଗର ଯାତ୍ରୀ ହୋଇ ଇହଧାମ ପରିତ୍ୟାଗ କରିଥିଲେ ।

ମଧୁସୂଦନଙ୍କର ବହୁତୋମୁଖୀ ପ୍ରତିଭା ଉତ୍କଳ ସମ୍ମିଳନୀରେ ଓ ଓଡ଼ିଆ ଆନ୍ଦୋଳନରେ, ଉତ୍କଳର ଶିଳ୍ପୋନ୍ନତିରେ, ବଡ଼ଲାଟଙ୍କର ଓ ବିହାର ଓଡ଼ିଶା ସରକାରଙ୍କ ବ୍ୟବସ୍ଥାପକ ସଭାରେ ଏପରି କି ସୁଦୂର ବିଲାତରେ ସୁଦ୍ଧା ବିକଶିତ ହୋଇଥିଲା । ସେ ବିହାର ଓଡ଼ିଶାର ମନ୍ତ୍ରୀଭାବରେ ନିଜର ସ୍ୱାଧୀନ ଚିନ୍ତାର ଯଥେଷ୍ଟ ପ୍ରମାଣ ଦେଖାଇ ଯାଇଅଛନ୍ତି । ତାଙ୍କର ଶେଷ ଜୀବନରେ ସେ କେତୋଟି କ୍ଷୁଦ୍ର କବିତା ରଚନା କରିଥିଲେ । ତହିଁର ଭାଷା ଓ ଭାବ ଯଥାର୍ଥରେ ପ୍ରାଣସ୍ପର୍ଶୀ । ତେଣୁ ଦେଶର ଆଶାଭରସାର ସ୍ଥଳ ଛାତ୍ର-ଛାତ୍ରୀମାନଙ୍କୁ ସେଥିରୁ ଜାତୀୟଭାବୋଦ୍ଦୀପକ ଛଟୋଟି କବିତା ଉପହାର ଦେଲି । ସେଥିର ଅଧିକାଂଶ ପଙ୍‌କ୍ତିକୁ ଅପ୍ରବଚନ ରୂପେ ଗ୍ରହଣ କରିଯାଇପାରେ । ତେଣୁ ଅପ୍ରବଚନ ଶ୍ରେଣୀରେ ତାହା ସନ୍ନିବେଶିତ କରି ଏ କବିତାସଂଗ୍ରହର ଉପସଂହାର କଲି ।

'ମାଆ ମାଆ' ବୋଲି କେତେ ମୁଁ ଖୋଜିଲି
ମାଆକୁ ପାଇଲି ନାହିଁ;
'ଭାଇ ଭାଇ' ବୋଲି କେତେ ମୁଁ ଡାକିଲି-
ନ ଦେଲେ ଉତ୍ତର କେହି । ୧ ।
ଖୋଜିଲି ଅରଣ୍ୟେ ଜନ ସମାଜରେ
ଖୋଜିଲି ବାରିଧିତଟ,
ସବୁଁଠି ଦେଖିଲି ମାଟି ଛନ୍ଦିଛନ୍ତି
ନ ମିଳେ ମାତାର ଭେଟ । ୨ ।

ଭୁବନେଶ୍ୱରରେ ପଦଚିହ୍ନ ପରେ
ଲେଖା ଅଛି "ସ୍ୱର୍ଗଦ୍ୱାର"
ନୀଳାଚଳ-ଧାମେ ପୂଜା ହେଉଅଛି
ହିନ୍ଦୁ ଜାତି ମଥା-ମଣି । ୩ ।

ଶୁଣିଅଛ ଶାସ୍ତ୍ରେ ସତୀ ଅପମାନ
ଧର୍ମ ଦ୍ୱଂସ କାରଣ,
ଅପମାନ ହେତୁ ସୀତା ଦେବୀଙ୍କର
ମହୀଗର୍ଭେ ବାସସ୍ଥାନ । ୪ ।

ଅପମାନ ହେତୁ ଜନନୀ ମୋହର
ଜଙ୍ଗଲ ଭୂମଧ୍ୟବାସୀ,
ଜଙ୍ଗଲର ମାଟି ପବିତ୍ର ହୋଇଛି
ସ୍ୱର୍ଗାଦପି ଗରୀୟସୀ । ୫ ।

ଜନନୀର ଦେଖା କରିବାର ଇଚ୍ଛା
ଯଦି ହୋଇଥାଏ ମନେ,
ଜଙ୍ଗଲର ମାଟି ଆଲିଙ୍ଗନ କର
ତା ଧୂଳି ଲେପ ବଦନେ । ୬ ।

ବୀରପ୍ରସବିନୀ କୋଟି ସୁତ ମାତା
ପାଇବ ଙ୍କ ଦରଶନ
ମୋ ଭଳି ନିର୍ଗୁଣ ଧନ-ମାନ-ହୀନ
ସନ୍ତାନ କଲେ ରୋଦନ ? । ୭ ।

କୋଟିଏ ସନ୍ତାନ ଗୋଟିଏ ସ୍ୱରରେ
'ଜନନୀ' 'ଜନନୀ' ଡାକ,
ତୃଷ୍ଣାର୍ତ୍ତର କାତର ଗଗନକୁ ଚାହିଁ
ଯେସନେ ଡାକେ ଚାତକ । ୮ ।

ଧନ, ମାନ, ଜନ — ଯାହା ଉପାର୍ଜ୍ଜନ
କରିଅଛ ଧରାତଳେ
ହରଷିତମନେ — କରତବ୍ୟ ଜ୍ଞାନେ
ଅର୍ପିଦିଅ ଯଜ୍ଞସ୍ଥଳେ । ୯ ।

ଜାତିପ୍ରେମ-ବହ୍ନି — ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୁତି,
'ସ୍ୱାର୍ଥମେଧ ଯଜ୍ଞ' — ଗୃରିଅଛେ ନାଚୁ
ଛତକୁ ମିଶାଇ ଛଢ । ୧୦ ।

ଭୂମିକମ୍ପ ହେବ — ଧରଣୀ ଫାଟିବ
ଉଠିବେ ସହସ୍ରଭୁଞ୍ଜା,
ସେହି ତୋର ମାତା, — ସେହି ତୋର ତ୍ରାତା
କର ସେହି ପଦ ପୂଜା । ୧୧ ।

# ଉତ୍କଳସନ୍ତାନ

৺ ମଧୁସୂଦନ ଦାସ

ତୁ ଯଦି ବୋଲାଉ ଉତ୍କଳସନ୍ତାନ
ତେବେ କିପାଁ ତୁହି ଯାଉ,
ତୋହର ଜନନୀ ବେଦନ କରିଲେ
କହିବାକୁ କିପାଁ ଡରୁ ? ୧ ।

ତୋ ପୂର୍ବପୁରୁଷେ ବୀରପଣିଆରେ
ଲଭିଥିଲେ କେତେ ଖ୍ୟାତି,
ହାକିମ ନିକଟେ ଦୁଃଖ କହିବାକୁ
କିପାଁ ଥରେ ତୋର ଛାତି ? ୨ ।

ତୋ ପୂର୍ବପୁରୁଷେ ରାଜ୍ୟ କରିଥିଲେ
ଗଙ୍ଗାଠାରୁ ଗୋଦାବରୀ,
ତାଙ୍କର ଔରସେ ଜନ୍ମ ହୋଇ ତୁହି
କେଉଁ ଗୁଣେ ତାଙ୍କୁ ସରି ? ୩ ।

ବ୍ର[illegible]ନବାସୀ ଅତୀବ ସାହସୀ
କାପୁରୁଷେ ଶ୍ରଦ୍ଧା ନାହିଁ,
ଶିଖ ରାଜପୁତ ସେ ମାନ୍ୟ ଲଭନ୍ତି
ତୋର ଭାଗ୍ୟେ ତାହା କାହିଁ ? ୪ ।

ଭୃ ମନେ ଭାବୁଛୁ ତୋଷାମୋଦ କରି
ବଢ଼ାଇବୁ ନାଡ-ମାନ,
ତୋଷାମୋଦଅନ୍ତ କୁକୁର ପ୍ରକୃତି
ଅଟିଠା ପତରେ ଧ୍ୟାନ । ୫ ।

ତୋଷାମୋଦକାରୀ କ୍ଷିପ୍ର ଶ୍ୱାନ ପରି
ସହଜେ ଚଣ୍ଟା ନ ଯାଏ,
ଭକ୍ତ୍ୟ ଭାବ ଧରି ଗୋଡ଼ ଗୁଡ଼ୁ ଗୁଡ଼ୁ
ବଷ ଲେପି ଦେଇଥାଏ । ୬ ।

ତୋଷାମୋଦ ଅଟେ ଅନ୍ଧାର ଗୋହିରି
ସ୍ୱାର୍ଥ ଚନ୍ଦ୍ରୀ ଲୁଚି ବସେ,
ସରଳ ପଥିକ ଙ୍କାଟରେ ଭେଟିଲେ
ଅକାତରେ ତାକୁ ନାଶେ । ୭ ।

ଜାଗର ଜନତ ହେବ କ ରେ ଭାଇ
ସ୍ୱାର୍ଥକୁ ଜଗତ ମଣି,
ଗୋଦର ଗୋଡ଼ରେ ମାଛିମ ଲାଗିଲେ
ଦେହର କ ଶୁଭ ଗଣି ? ୮ ।

ଜାଗର ଜନତ ସେ କାହିଁ କରିବ
ସ୍ୱାର୍ଥେ ଯାର ବ୍ୟସ୍ତ ମନ,
ଶାଗୁଣା ବଳୁଆ ଉଦ୍ଧ୍ବସ୍ତ ହେଲେ
ଶବ କ ପାଇବ ପ୍ରାଣ ? ୯ ।

ଜାତ-ନନ୍ଦଘୋଷ ଚଳେବ କି ଭାଇ
ସ୍ୱାର୍ଥକୁ ସାରଥି କଲେ,
ଚାଲେ କ ରେ ଟାଙ୍ଗେ ଦାନାର ଠୋଙ୍ଗିଡ଼ା
ଘୋଡ଼ାମୁହେଁ ବନ୍ଧା ଥିଲେ ? ୧୦ ।

ସ୍ୱାର୍ଥର ବନ୍ଧତା ଅଟେ ତୋଷାମୋଦ
ଭସ୍ମ ମିଥ୍ୟା ତାଙ୍କ ପୂଜ,
ରାଜ୍ୟରେ ବିପ୍ଳବ କଷ୍ଟସ୍ଥ ଘଟିବ
ଏମାନେ ହେଲେ ଏକଜ । ୧୧ ।

ଉତ୍କଳର ଜଠ ରେ ଜର୍ମିଲ ସନ୍ତାନ
ଉଠିବୁ ତୁ କେବେ ବର୍ଣ୍ଣ,
ପୂରୁବ ଗୌରବ ପୂରୁବ ସାଦର
ପଡ଼ିବ କି କେବେ ମନେ ? ୧୨ ।

ତୋହର ଜନନୀ ଶାରଦ ଦିବଣୀ
ଧୂଳିରେ ପଡ଼ୁଛି ଦେଖ,
ଜନ-ସମାଜରେ, ଏ ମହୀ ମଧ୍ୟରେ
କି ଦେଖାଉ ମୁଖ ? ୧୩ ।

ତୋ ପୂର୍ବପୁରୁଷେ ସ୍ୱର୍ଗଧାମେ ଥାଇ
ଭୋଗୁଛନ୍ତି ମନସ୍ତାପ,
ତାଙ୍କର ଜୀବନ, କର ବିସ୍ମରଣ
କରୁଛୁ ତୁ ମହାପାପ । ୧୪ ।

ତୋଷାମୋଦ ଛାଡ଼ି ସ୍ୱାର୍ଥ ପରିହରି
ସତ୍ୟକୁ ଆଶ୍ରୟ କର,
ଦୁଇଦିନ ପରେ ବ୍ରିଟିଶ ରାଜ୍ୟରେ
ମଙ୍ଗଳ ହୋଇବ ତୋର । ୧୫ ।

# ଜାତିଇତିହାସ

ମଧୁସୂଦନ ଦାସ

ଜାତିଇତିହାସ ଜାତିର କର୍ଣ୍ଣର
ତଟେ ବନ୍ଧେ ସଦା ଜାତିପ୍ରାଣଧାର ।
ସେ ଧାରରୁ ନୀର ପିଇଛି ଯେ ନର
ନିଶ୍ଚୟ ହେବ ସେ ଜାତି କର୍ମବୀର । ୧ ।

କଳ କଲ୍ଲ ରବେ ଛୁଟିଛି ସେ ଧାର
ଅତୀତ କୀର୍ତ୍ତି ଗାଇ ନିରନ୍ତର,
ଛବି କୀରତିର ହୃଦୟେ ନାଚୁଛି,
ଯଥା ଚନ୍ଦ୍ରୋଦୟେ ନାଚେ ରତ୍ନାକର । ୨ ।

ଧାର ମଧ୍ୟେ ଦେଖେ ମୋହିନୀ ପ୍ରତିମା,
ଦେଖି ଦେଖି ସେହି ଜନନୀ ଚିତ୍ତହର,
କାନ ଡେରି ଶୁଣ ମାତା କହୁଛନ୍ତି,
ଅସ ଅସ ବତ୍ସ, ମୋର ପାଖକରେ । ୩ ।

ଏହି ମୋର ସେବ ବୀର ମୋ ସନ୍ତାନେ
ବୀରପ୍ରସବନୀ କ୍ଷୀର ଏହି ମୋର
ଛାଡ଼ରେ ଅଳସ୍ୟ ବଢ଼ାଅ ସାହସ
ଜାତି-ନନ୍ଦକାନ୍ତ କର ଅଗ୍ରସର । ୪ ।

—ସମାପ୍ତ—

Printer—L. Garabadu, Sri Radharaman Press,
Cuttack—1945.